# ବିଶ୍ୱଗୁରୁ ଦାଦା ଜେ.ପି. ବାସୱାନୀ

ଦାଦା ଜେ.ପି. ବାସୱାନୀ ଆଧୁନିକ ଜଗତର ଅନନ୍ୟ ବିଶ୍ୱଗୁରୁ । ସେ ପ୍ରେମର ମୂର୍ତ୍ତିମନ୍ତ ପ୍ରତୀକ । ତାଙ୍କ କଣ୍ଠସ୍ୱରର କୋମଳତା, ବାର୍ତ୍ତାସବୁର ମଧୁରତା ଏବଂ କାର୍ଯ୍ୟଧାରାର ସଙ୍ଗୀତ ମନୁଷ୍ୟର ମନପ୍ରାଣକୁ ଅଭିଭୂତ କରେ । ମନୁଷ୍ୟର ଚେତନାକୁ ସ୍ପର୍ଶ କରି ତା'ର ରୂପାନ୍ତର ଆଣେ । ତାଙ୍କ ଦିବ୍ୟସନ୍ଦେଶର ସାରାବାର୍ତ୍ତା ହେଉଛି – "ପ୍ରେମ, ପ୍ରେମ ଆଉ ପ୍ରେମ । ତୁମର ଅଖଣ୍ଡ ପ୍ରେମ ପ୍ରବାହ ସମସ୍ତଙ୍କୁ ସ୍ପର୍ଶ କରୁ । ତୁମର ନିନ୍ଦୁକ ମଧ ତୁମ ପ୍ରେମର ଅନୁଭବ ପାଉ । ତୁମେ ଜ୍ୱଳନ୍ତ ଅଗ୍ନିରୁ ମଧ ଅଧିକ ଦୀପ୍ତିମନ୍ତ ହୋଇ ବାହାରି ଆସିପାରିବ ।" ପ୍ରେମର ଏହି ମୂଳମନ୍ତ୍ର ଉପରେ ପ୍ରତିଷ୍ଠିତ ହୋଇଛି ବାସୱାନୀଙ୍କର ବିଶ୍ୱସଙ୍ଗଠନ । ଭୌଗୋଳିକ ସୀମାରେଖାର ବହୁ ଉର୍ଦ୍ଧ୍ୱକୁ ଯାଇ ସମଗ୍ର ବିଶ୍ୱରେ ମାନବ ସେବା ପାଇଁ ଏହା ଉଦ୍ଦିଷ୍ଟ ।

ଦାଦାଜୀଙ୍କର ଦିବ୍ୟ ସନ୍ଦେଶ ଉପରେ ଆଧାରିତ ଏହି ପୁସ୍ତକଟି ଏକ ଅମୂଲ୍ୟ-ରତ୍ନ । ଅମୃତ ଲାଭକରିବାର ଅଭିଳାଷ ପୋଷଣକରି ଦିବ୍ୟ ମାର୍ଗରେ ଯାତ୍ରା କରୁଥିବା ବ୍ୟକ୍ତିମାନଙ୍କ ପାଇଁ ଏହା ଏକ ପରମ ଦିଗଦର୍ଶକ । ତାଙ୍କ ବାଣୀସମୂହର ନିର୍ଯ୍ୟାସ ବହନ କରିଥିବା ଏହି ପୁସ୍ତକଟି ଏକ ସାରଥୀର ସୁନ୍ଦର ପ୍ରତୀକ ସଦୃଶ । କିନ୍ତୁ ଏହି ବିଶ୍ୱଗୁରୁ କହନ୍ତି, ସେ କାହାର ଗୁରୁ ନୁହନ୍ତି ମାତ୍ର ସମସ୍ତଙ୍କର ଶିଷ୍ୟ ।

# କ୍ଷମାର ଚମତ୍କାରିତା

ଦାଦା ଜେ.ପି ବାସୱାନୀ
ଅନୁବାଦ -
ବ୍ରଜ କୁମାର ଶତପଥୀ
ସୁଶ୍ରୀ ସୁଶ୍ରୀୟା, କ୍ରୀଷ୍ଣା ଚିନ୍ନରା

# କ୍ଷମାର ଚମତ୍କାରିତା

Kshyamara Chamatkarita

by

Dada J.P. Vswani

Translated By-

B.K. Satapathy,

Sushree Sushreeya, Krishna Chinnara

Published on 02.08.2017 on 99th Bithday of Rev. Dadaji

Published by : B.K. SATAPATHY

35 Laxmi Vihar

Po. - Sainik Schol, Bhubaneswar - 751005

Ph. - 9437630574

Price: 20/- Only

# Blessings of Dadaji ....

To

Beloved Brother Shri B.K. Satapathy —
a man with a rich mind, a beautiful heart
and a radiant simplicity,
without whose help and labour of love this
beautiful book would not have seen
the light of day —
with love, gratitude and blessings.

J.B. Vaswani.
Oct. 8, 05

## ସୂଚୀପତ୍ର

ଆଜିକାଲି ଦୁନିଆସାରା ଯେଉଁ ଜିନିଷଟିର ଅକାଳ ଦେଖା ଦେଇଛି ତାହା ହେଲା, ପରସ୍ପର ମଧ୍ୟରେ ବୁଝାବଣା । ଆମେ ଭାବନାତ୍ମକ ବିଭେଦ ବିଷୟରେ ସବୁବେଳେ ଶୁଣୁଛେ, କିନ୍ତୁ ଏହା ସବୁ ଓକିଲ ଓ ଜଜ୍‌ମାନଙ୍କ ଦ୍ୱାରା ବିଛାଯାଇଥିବା ଭ୍ରମଜାଲ, ଯାହାଦ୍ୱାରା ସେମାନେ ବିଚ୍ଛେଦ ପାଇଁ ଯୁକ୍ତି ଉପସ୍ଥାପନ କରିପାରିବେ ।

ଭାବନାତ୍ମକ ଅସାମଞ୍ଜସ୍ୟର ପ୍ରକୃତରେ କିଛି ଅସ୍ତିତ୍ୱ ନାହିଁ । ଭୁଲବୁଝାବଣା ଓ ତ୍ରୁଟି ଯୋଗୁ ହିଁ ଅସୁବିଧା ଦେଖାଯାଇଥାଏ, ଯାହାକୁ ଦୃଢ଼ ଇଚ୍ଛାଶକ୍ତି ଦ୍ୱାରା ଦୂର କରାଯାଇପାରିବ ।

# ବୁଝାବଣାର ଚମତ୍କାରିତା

## ପରିଚ୍ଛେଦ - ଏକ

## ଭୀଷଣ ଅକାଳ (ଦୁର୍ଭିକ୍ଷ)

ଜଣେ ମହିଳା ଥିଲେ । ଦିନେ ସେ ରାସ୍ତାରେ ଯାଉଥିବା ସମୟରେ ଗୋଟିଏ ଲୋକ ଚେୟାର ଉପରେ ବସି ବଗିଚାରେ କାମ କରୁଥିବା ଦେଖିଲେ । ତାହା ଦେଖି ସେ ବଡ଼ ଆଶ୍ଚର୍ଯ୍ୟ ହେଲେ । ସେ କହିଲେ, "ଏହା ତ ଆଳସ୍ୟର ବଡ଼ ଉଦାହରଣ ।" କିଛି ସମୟପରେ ସେ ଚେୟାର ଆଡ଼କୁ ଯେତେବେଳେ ଦେଖିଲେ, ଦେଖିବାକୁ ପାଇଲେ ଚେୟାର ପାଖରେ ଦୁଇଟି ଆଶାବାଡ଼ି ପଡ଼ିଛି । ସେତେବେଳେ ସେ ବୁଝିପାରିଲେ ଯେ ବଗିଚାରେ କାମ କରୁଥିବା ଲୋକଟି ପ୍ରକୃତରେ ଅପାଙ୍ଗ । ସେହି ମହିଳାଙ୍କର ନିନ୍ଦା ସଙ୍ଗେ ସଙ୍ଗେ ପ୍ରଶଂସାରେ ବଦଳି ଗଲା । ସେ ମନେ

ମନେ ସେହି ବ୍ୟକ୍ତିଙ୍କ ପ୍ରଶଂସା କରିବାକୁ ଲାଗିଲେ, କାରଣ ଅପାଙ୍ଗ ହୋଇ ମଧ୍ୟ ତାଙ୍କର କାମ କରିବାକୁ ଇଚ୍ଛା ଥିଲା ।

ମହିଳାଜଣକ ଜୀବନରେ ଗୋଟିଏ ବଡ଼ ଶିକ୍ଷା ପାଇଲେ ଯେ, କୌଣସି ବ୍ୟକ୍ତିର ଅବସ୍ଥା ବିଷୟରେ ନଜାଣି କୌଣସି ମତାମତ ଦେବା ଉଚିତ ନୁହେଁ ।

ଆଉ ଜଣେ ମହିଳା ଥିଲେ । ସେ ତାଙ୍କର ଦୈନନ୍ଦିନ ଆବଶ୍ୟକ ପନିପରିବା ଜଣେ ଠେଲାବାଲାଠାରୁ କିଣୁଥିଲେ । ଠେଲାବାଲାଟି ଏକ ନିଶ୍ଚିତ ସମୟରେ ଆସି ପରିବା ସବୁ ଦେଇଯାଉଥିଲା । ଦିନେ ସେହି ମହିଳାଙ୍କ ଘରକୁ କେତେକ କୁଣିଆ ଆସିଥିଲେ । ମହିଳା ଜଣକ ପରିବାବାଲାର ଆସିବାକୁ ଆଗ୍ରହର ସହିତ ଚାହିଁ ରହିଥିଲା । କିନ୍ତୁ ସେଦିନ ପରିବାବାଲା ଆସିଲା ନାହିଁ । ମହିଳାଜଣଙ୍କୁ ଲାଗିଲା ଯେ ପରିବାବାଲାଟି ତାଙ୍କୁ ଧୋକା ଦେଇଛି । ପରଦିନ ନିଶ୍ଚିତ ସମୟରେ ସେ ଯେପରି ଆସିଛି, ମହିଳା ଜଣକ ଚିତ୍କାରକରି କହିଲେ, "ତୋ'ପରି ଧୋକାବାଜ ମୁଁ କେବେବି ଦେଖି ନାହିଁ । ଗତକାଲି ତୁ ମୋତେ

ଅପମାନିତ କରିଦେଲୁ । ପରିବା ମୋର ଅତି ଦରକାର ଥିଲା କିନ୍ତୁ ତୁ ଆସିଲୁ ନାହିଁ ।"

ମହିଳାଙ୍କର ଚିତ୍କାର ବନ୍ଦ ହେଲାପରେ, ପରିବାବାଲାଟି ନମ୍ରଭାବରେ କହିଲା, "ମୋ' ପାଇଁ ଆପଣ ଅସୁବିଧାରେ ପଡ଼ିଥିବାରୁ ମୁଁ ଦୁଃଖୀତ । କାଲି ଅଚାନକ ମୋ ମା'ଙ୍କର ମୃତ୍ୟୁ ହୋଇଗଲା । ମୋତେ ତାଙ୍କର ଅନ୍ତିମ ସଂସ୍କାର କରିବାକୁ ଯିବାକୁ ପଡ଼ିଲା ।" ଏହାଶୁଣି ମହିଳା ଜଣଙ୍କୁ ନିଜ ଚିତ୍କାର ଉପରେ ଲଜ୍ଜା ଆସିଲା । ସେ ପ୍ରତିଜ୍ଞା କଲେ କି, ଆଉ କେବେବି ଅନ୍ୟର ପ୍ରକୃତ ଅବସ୍ଥା ନଜାଣି କାହାକୁ ଭଲମନ୍ଦ କରି କହିବେ ନାହିଁ । ଆମର ମଧ୍ୟ ଏହି ବିଚାର ଶକ୍ତିର ଆବଶ୍ୟକତା ଅଛି ।

ଥରେ ଜଣେ ହୃଷ୍ଟପୁଷ୍ଟ ଯୁବକ ଈଶ୍ୱରଙ୍କ ସାଧନାରେ ଲାଗିଥିବା ଜଣେ ଧାର୍ମିକ ବ୍ୟକ୍ତିଙ୍କ ପାଖକୁ ଆସି କିଛି ଖାଇବାକୁ ମାଗିଲେ । ତାଙ୍କୁ ଦେଖି ଧାର୍ମିକ ବ୍ୟକ୍ତି ଜଣକ କହିଲେ, "ତୁମକୁ ଭିକ ମାଗିବାକୁ ଲଜ୍ଜା ଲାଗୁନାହିଁ ? ତୁମେ ସୁସ୍ଥ ସବଳ ଅଟ । କାମ କରି ରୋଜଗାର କରୁନାହଁ କାହିଁକି ?" ଯୁବକ ଜଣକ କୌଣସି ଯୁକ୍ତି କଲେ ନାହିଁ । ସେ କେବଳ ଏତିକି କହିଲେ, "ଧନ୍ୟବାଦ । ଈଶ୍ୱର ଆପଣଙ୍କର ମଙ୍ଗଳ କରନ୍ତୁ ।"

ସେଦିନ ରାତିରେ ସେହି ଧାର୍ମିକ ବ୍ୟକ୍ତି ଗୋଟିଏ ସ୍ୱପ୍ନ ଦେଖିଲେ । ସ୍ୱପ୍ନରେସେ ଦେଖିଲେ ଯେ, ଗୋଟିଏ ଶବ ପଡ଼ିଛି ଓ ତାଙ୍କର ଗୁରୁ ତାଙ୍କୁ ସେ ଶବକୁ ଖାଇବାକୁ କହୁଛନ୍ତି । ଧାର୍ମିକ ବ୍ୟକ୍ତି ଜଣକ ନିଜର ଗୁରୁଙ୍କ ଆଜ୍ଞା ଅବଜ୍ଞା କରିବାକୁ ଚାହୁଁ ନଥିଲେ । ସେ ପଚାରିଲେ, "ମୁଁ ଗୋଟିଏ ମୃତ ଶରୀରକୁ କିପରି ଖାଇପାରିବି ?" ଗୁରୁ କହିଲେ, "ଆଜି ସକାଳେ ତ ତୁମେ ଗୋଟିଏ ଶବ ଖାଇଥିଲ । ତୁମେ ଜାଣିଛ କି ଆଜି ଯେଉଁ ବ୍ୟକ୍ତିଙ୍କୁ ତୁମେ ସମାଲୋଚନା କଲ ସେ ତପୋବନରେ ରହି ଧ୍ୟାନ ଓ ପ୍ରାର୍ଥନାମୟ ଜୀବନ ଯାପନ କରୁଥିବା ଜଣେ ସାଧୁ ଅଟନ୍ତି ।" ସେ କେବଳ ଫଳ ଓ କନ୍ଦମୂଳ ଖାଆନ୍ତି । ସବୁଦିନ ସକାଳେ ସେ ପାଣି ଆଣିବାକୁ ନଦୀକୂଳକୁ ଯାଆନ୍ତି । ଆଜି ସକାଳେ ସେ ଯେତେବେଳେ ପାଣି ଆଣିବାକୁ ଗଲେ, ଦେଖିଲେ ଯେ ଗୋଟିଏ ବ୍ୟକ୍ତି ପାଣିରେ ବୁଡ଼ି ଯାଉଛି । ତୁରନ୍ତ ସେ ପାଣି ଭିତରକୁ ଡେଇଁ ସେ ବ୍ୟକ୍ତିକୁ ରକ୍ଷା କଲେ । ଯେତେବେଳେ ତାର ଚେତା ଫେରିଲା ସାଧୁ ତାକୁ କହିଲେ, "ତୁମେ ଏହିଠାରେ ଅପେକ୍ଷା କର । ମୁଁ ସହରକୁ ଯାଇ ତୁମ ପାଇଁ କିଛି ଖାଦ୍ୟ ଆଣୁଛି ।"

ପ୍ରତିଦିନ ଆମେ କେତେ ଶବ ଖାଇବା ?

ଏହା କଣ ସତ୍ୟ ନୁହେଁ ଯେ ଆଜି ସଂସାରରେ ପରସ୍ପର ବୁଝାବଣାର ବଡ଼ ଆବଶ୍ୟକତା ରହିଛି ?

ବ୍ୟକ୍ତି ବ୍ୟକ୍ତି ମଧ୍ୟରେ, ପରିବାର ମଧ୍ୟରେ, ପଡ଼ୋଶୀଙ୍କ ମଧ୍ୟରେ, ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ତଥା ଭିନ୍ନ ଭିନ୍ନ ଦେଶ ମଧ୍ୟରେ ପରସ୍ପର ବୁଝାବଣା ଅତ୍ୟନ୍ତ ଦରକାର । ଲୋକମାନଙ୍କ ମଧ୍ୟରେ ସମ୍ପର୍କ ସ୍ଥାପନ ବିନା ଆମେ ଅନ୍ତଃରାଷ୍ଟ୍ରୀୟ ସମନ୍ୱୟ ସ୍ଥାପନ କରିପାରିବା ନାହିଁ । ଠିକ୍ ସେହିପରି ଲୋକମାନଙ୍କ ହୃଦୟରେ ଶାନ୍ତି ନ ଆଣିପାରିଲେ, ଅନ୍ତଃରାଷ୍ଟ୍ରୀୟ ଶାନ୍ତି ସମ୍ଭବ ହୋଇପାରିବ ନାହିଁ । ମୋର ସାଧୁ ବାସୱାନୀଙ୍କର କଥା ମନେ ପଡ଼ିଯାଉଛି, "ଯେତେବେଳେ ଲୋକମାନଙ୍କର ହୃଦୟ ଜ୍ୱାଳାମୁଖୀ ପରି ପ୍ରଜ୍ୱଳିତ, ସେତେବେଳେ ପୃଥିବୀରେ ଶାନ୍ତି କିପରି ସ୍ଥାପିତ ହୋଇ ପାରିବ ?"

ଆଜି ସଂସାରରେ ସବୁଠାରୁ ବଡ଼ ଦୁର୍ଭିକ୍ଷ ହେଲା ପରସ୍ପର ବୁଝାବଣାର ଅକାଳ । କୌଣସି ଦୁଇଟି ବ୍ୟକ୍ତି ପରସ୍ପର ପ୍ରତି ସମ୍ବେଦନଶୀଳ ହେବାର ଦେଖାଯାଉନାହିଁ । ସେଥିପାଇଁ ଆମକୁ

ବାରମ୍ବାର ଶୁଣିବାକୁ ମିଳୁଛି କି "ତୁମେ ମୋତେ ବୁଝିପାରୁ ନାହଁ କାହିଁକି ?" ଯେଉଁ ଯୁଗରେ ଆମେ ସମସ୍ତେ ରହିଛେ, ସେଠାରେ ସବୁଠାରୁ ଭୁଲ ବୁଝାବଣା ଦେଖାଦେଇଛି । ଆମ ଘରେ, କ୍ଲବରେ, ସ୍କୁଲରେ, କଲେଜରେ, ବିଶ୍ୱବିଦ୍ୟାଳୟମାନଙ୍କରେ ଏପରିକି ମନ୍ଦିର ଓ ଗୀର୍ଜାଘରେ ମଧ୍ୟ ବୁଝାବଣାର ଘୋର ଅଭାବ ରହିଛି । ମହାନ ପାର୍ଶୀ ପୈଗମ୍ବର ଜରଥୁଷ୍ଟଙ୍କର ଗୋଟିଏ କଥା ମନେ ପଡ଼ିଯାଉଛି, "ମନେରଖ, କାଠ ପଥରରେ ତିଆରି ଶହେ ମନ୍ଦିର ଅପେକ୍ଷା ଗୋଟିଏ ସମ୍ବେଦନଶୀଳ ହୃଦୟର ମୂଲ୍ୟ ଅଧିକ ।" ଆଜି ସମ୍ବେଦନଶୀଳ ହୃଦୟର ଅତ୍ୟନ୍ତ ଆବଶ୍ୟକତା ରହିଛି ।

ରାଜା ସୋଲୋମନ ପ୍ରାର୍ଥନା କରୁଥିଲେ, "ହେ ଈଶ୍ୱର, ତୁମେ ମୋତେ ବହୁତ କିଛି ଦେଇଛ, କୃପାକରି ମୋତେ ଆଉ ଗୋଟିଏ ଜିନିଷ ଦେଇଦିଅ । ମୋତେ ଗୋଟିଏ ସମ୍ବେଦନଶୀଳ ହୃଦୟ ପ୍ରଦାନ କର ।"

ମନୁଷ୍ୟର ବୁଦ୍ଧି ବହୁତ ବିକଶିତ ହୋଇଛି । କୌଶଳ କ୍ଷେତ୍ରରେ ମଧ୍ୟ ବହୁତ ଉନ୍ନତି ହୋଇଛି । ବିଜ୍ଞାନ ମଧ୍ୟ ନିରନ୍ତର ପ୍ରଗତି କରିଚାଲିଛି । କିନ୍ତୁ ଆଜି ସଭ୍ୟତା ଆଗରେ ଯେଉଁ ସବୁ

ସମସ୍ୟା ମାନ ଅଛି ତାହା କେବଳ ବିକଶିତ ବୁଦ୍ଧିଦ୍ୱାରା ସମାଧାନ ହୋଇପାରିବ ନାହିଁ । ସେଥିପାଇଁ ଜଣେ ଅନ୍ୟକୁ ବୁଝିପାରିବା ଭଳି ଜାଗ୍ରତ ଓ ଅଲୌକିକ ହୃଦୟର ଆବଶ୍ୟକତା ଅଛି ।

ବିଜ୍ଞାନ ଆମକୁ ଉପକରଣ, ଆରାମ ଓ ଅନେକ ସୁବିଧା ଦେଇଛି । କିନ୍ତୁ ପରସ୍ପରକୁ ବୁଝିବାକୁ ଯେଉଁ ଭାବନାର ବିକାଶ ଦରକାର ସେଥିପାଇଁ ବିଜ୍ଞାନ କିଛି କରିନାହିଁ । ମହାନ ଋଷ ଲେଖକ ମାକ୍ସିମ ଗର୍କିଙ୍କ ଜୀବନର ଏକ ମର୍ମସ୍ପର୍ଶୀ ଘଟଣା ରହିଛି । ଦିନେ ସେ କୃଷକମାନଙ୍କର ଏକ ବିଶାଳ ସଭାକୁ ଉଦ୍‌ବୋଧନ ଦେଇ କହିଲେ, "ବିଜ୍ଞାନ ମନୁଷ୍ୟକୁ ପକ୍ଷୀପରି ଆକାଶରେ ଉଡ଼ିବା ଶିଖାଇଛି । ମାଛପରି ଗଭୀର ସମୁଦ୍ରରେ ପହଁରିବା ଶିଖାଇଛି ।" ଏତକ ଶୁଣି ଗୋଟିଏ ସିଧାସାଧା, ଅପାଠୁଆ କୃଷକ ଠିଆ ହୋଇପଡ଼ି କହିଲା, "ମହାଶୟ, ବିଜ୍ଞାନ ମନୁଷ୍ୟକୁ ପକ୍ଷୀପରି ଆକାଶରେ ଉଡ଼ିବା ଶିଖାଇଛି କିନ୍ତୁ ବିଜ୍ଞାନ ମନୁଷ୍ୟକୁ ସଦ୍‌ଭାବ, ମିତ୍ରତା ଓ ଶାନ୍ତିରେ ଏହି ପୃଥିବୀରେ କିପରି ରହିବାକୁ ହୁଏ ଶିଖାଇ ପାରିନାହିଁ ।"

ଆମେ ଐତିହାସିକ ହେବା ଉଚିତ ନୁହେଁ । କ୍ଷମା

ବିଜ୍ଞାନ ଆମକୁ ଅନେକ ଆଶ୍ଚର୍ଯ୍ୟଜନକ ବସ୍ତୁ ଦେଇଛି । କୀଟମାନଙ୍କୁ ମାରିବାପାଇଁ ଡ଼ି.ଡ଼ି.ଟି., ପତଙ୍ଗମାନଙ୍କୁ ନଷ୍ଟ କରିବା 2-4-D, ମୂଷାମାନଙ୍କୁ ମାରିବାପାଇଁ ଫର୍ମୁଲା ୧୦୮୦ ଓ ବିଜ୍ଞାନ E-me-2 ପରି ଜୀବନ ନଷ୍ଟକାରୀ ପଦାର୍ଥ ମଧ୍ୟ ଦେଇଛି ଯେଉଁଥିରେ ପୂରା ମଣିଷ ସମାଜକୁ ନଷ୍ଟ କରିବାର କ୍ଷମତା ଅଛି ।

ଯେତେବେଳେ ବୈଜ୍ଞାନିକମାନଙ୍କୁ ପରମାଣୁକୁ ଭାଙ୍ଗି ତା ମଧ୍ୟରେ ଥିବା ମହାଶକ୍ତିକୁ ପାଇବାର ପନ୍ଥା ଜଣାପଡ଼ିଲା, ସେତେବେଳେ ଏହି ଜ୍ଞାନକୁ ପ୍ରଥମେ ନାଗାସାକି ଓ ହିରୋସୀମାର ନିର୍ଦ୍ଦୋଷ ଲୋକଙ୍କ ଉପରେ ପ୍ରୟୋଗ କଲେ । ସେଠାରେ ମୃତ୍ୟୁ ଓ ବିନାଶର ବର୍ଷା ହେବାକୁ ଲାଗିଲା । ବିଜ୍ଞାନର ସବୁଠାରୁ ବଡ଼ ସମସ୍ୟା ହେଲା ଏହାର ଦୁରୁପଯୋଗ । ମନୁଷ୍ୟ ମନୁଷ୍ୟ ମଧ୍ୟରେ ବୁଝାବଣା ଭାବନାର ବିକାଶ ନହେବା କାରଣରୁ ବିଜ୍ଞାନ ବରଦାନ ବଦଳରେ ଅଭିଶାପରେ ପରିଣତ ହୋଇଯାଇଛି ।

# ପରିଚ୍ଛେଦ - ଦୁଇ
# କାଳମାନଙ୍କ କଥାବାର୍ତ୍ତା

ଜଣେ ଯୁବକ ତାଙ୍କ ପିତାଙ୍କ ପାଖକୁ ଗଲେ । ତାଙ୍କ ପିତା ଜଣେ ଋଷି ଥିଲେ । ଯୁବକ ଜଣକ ପିତାଙ୍କୁ କହିଲେ, "ମୁଁ ଜ୍ଞାନର ସନ୍ଧାନରେ ଅଛି ।" ପିତା କହିଲେ "ପ୍ରଥମେ ଯାଇ ଅନ୍ୟମାନଙ୍କୁ ବୁଝିବାକୁ ଚେଷ୍ଟା କର ।" ପୁତ୍ର ପୁଣି କହିଲେ, "ପିତାଜୀ ! ମୁଁ ମଧ୍ୟ କ୍ଷମତା ଚାହୁଁଛି ।" ପିତା କହିଲେ, "ପୁତ୍ର ! ସେଥିପାଇଁ ମଧ୍ୟ ଅନ୍ୟମାନଙ୍କୁ ବୁଝିବାକୁ ପଡ଼ିବ ।" ଜ୍ଞାନ ଲାଭ ଭଲ ଏବଂ କ୍ଷମତା ମଧ୍ୟ ଭଲ କିନ୍ତୁ ଏହି ଦୁଇଟି ସେ ପର୍ଯ୍ୟନ୍ତ ଉପଯୋଗୀ, ଯେତେବେଳ ପର୍ଯ୍ୟନ୍ତ ଏହାର ପ୍ରୟୋଗ ସାର୍ବଜନୀନ କଲ୍ୟାଣ ପାଇଁ କରାଯାଇଥାଏ । ଯଦି ମଣିଷ

ମଧ୍ୟରେ ଅନ୍ୟକୁ ବୁଝିବାକୁ ଭାବନା ନ ରହିବ, ତେବେ ଜ୍ଞାନ ଓ କ୍ଷମତା ଦୁଇଟିଯାକ ବିନାଶର କାରଣ ହୋଇଯିବ ।

ଆଜି କାଲି ପରସ୍ପରକୁ ବୁଝିବାର ଭାବନା ବହୁତ ଆବଶ୍ୟକ । ଯଦି ଆମେ ଏହି ଭାବନାର ବିକାଶ କରିବାପାଇଁ ଚାହୁଁଛୁ, ତେବେ ଆମେ ନିଜ ଭିତରେ ଅନ୍ୟକୁ ବୁଝିବାର ଇଚ୍ଛାକୁ ଜନ୍ମ ଦେବାକୁ ପଡ଼ିବ । ଏହା ସବୁଠାରୁ ଜରୁରୀ । ଏଥିପାଇଁ ଆମ ମନରେ ପ୍ରକୃତ ଇଚ୍ଛା ରହିବା ଦରକାର ।

ଦୁଇବର୍ଷ ପୂର୍ବେ ମୁଁ ସୁଇଜରଲାଣ୍ଡରେ ଥିଲି । ସେଠାରେ ମୋତେ ଜଣେ ଆଶ୍ଚର୍ଯ୍ୟଜନକ ବ୍ୟକ୍ତି ଦେଖାହେଲେ । ଆମ ମଧ୍ୟରେ ସମସ୍ୟା ଥିଲା କି ଆମେ ପରସ୍ପର କଥାବାର୍ତ୍ତା ହୋଇପାରୁନଥିଲୁ, କାରଣ ମୋତେ ଫ୍ରେଞ୍ଚ ଭାଷା ଆସୁନଥିଲା ଓ ସେ କେବଳ ଅଳ୍ପ କେତୋଟି ଇଂରାଜୀ ଶବ୍ଦ ଜାଣିଥିଲେ । ତଥାପି ଆମେ ପରସ୍ପରକୁ ନିଜର ଭାବ ବୁଝାଇବାକୁ ସଫଳ ରହିଥିଲୁ । ଏହାର କାରଣ ଆମର କଥାବାର୍ତ୍ତା କରିବାକୁ ପ୍ରବଳ ଇଚ୍ଛା ଥିଲା । ଏହି ପ୍ରବଳ ଇଚ୍ଛା ସମସ୍ତଙ୍କଠାରେ ରହିବା ଦରକାର । ସମ୍ବେଦନଶୀଳ ହୃଦୟ ବିକଶିତ କରିବାକୁ ସର୍ବପ୍ରଥମ ସର୍ତ୍ତ ହେଲା,

ଆମଠାରେ ପରସ୍ପରକୁ ବୁଝିବାକୁ ପ୍ରବଳ ଇଚ୍ଛା ରହିବା ଦରକାର । ଉପରୁ ଦେଖିଲେ ଏହା ଅତି ସାଧାରଣ ଲାଗୁଛି କିନ୍ତୁ ମୋର କହିବାର କଥା ଯେ ପରସ୍ପର ବୁଝାବଣାରେ ଇଚ୍ଛା ବା ଲାଳସା ଏପରି ଦୁର୍ଲ୍ଲଭ ଯେ, ତାହା ଆମେ ଭାବିପାରିବା ନାହିଁ । ଦୁନିଆସାରା ଲୋକଙ୍କ କଥାବାର୍ତ୍ତା ଶୁଣ । ମୁଁ ଦମ୍ପତିମାନଙ୍କ କଥାବାର୍ତ୍ତା ଶୁଣିଛି । ମୁଁ ଏହାକୁ କାଲ ବା ବଧିରମାନଙ୍କର କଥାବାର୍ତ୍ତା ବୋଲି କହେ । ନିଜକୁ ଠିକ୍ ବୋଲି ପ୍ରମାଣିତ କରିବା ପାଇଁ ଓ ନିଜର ସ୍ଥିତିକୁ ସୁଦୃଢ଼ କରିବାକୁ, ନିଜକୁ ବାସ୍ତବିକତାଠାରୁ ମହାନ ବୋଲି ଦେଖାଇବା ଓ ଅନ୍ୟକୁ ଦୋଷୀ ରୂପରେ ପ୍ରସ୍ତୁତ କରିବା ଲୋକମାନଙ୍କ ପୁରୁଣା ଅଭ୍ୟାସ । ପ୍ରତ୍ୟେକ ବ୍ୟକ୍ତି ନିଜର ବିଚାର ଠିକ୍ ବୋଲି କହେ । ଅନ୍ୟକୁ ବୁଝିବାକୁ ଇଚ୍ଛା କାହାରି ପାଖରେ ନାହିଁ । ଆପଣ କେବେ ଭାବିଛନ୍ତି କି ଆମେ କେତେ ଛୋଟ ଛୋଟ କଥାରେ କଳି କଜିଆ କରୁ । ଜଣେ ସ୍ତ୍ରୀ ଲୋକଙ୍କୁ ଶୋଇବାବେଳେ କିଛି ପଢ଼ାପଢ଼ି ନ କଲେ ନିଦ ଆସେ ନାହିଁ ଓ ତାଙ୍କ ପତିଙ୍କୁ ଆଲୁଅରେ ନିଦ ହୁଏ ନାହିଁ । ସ୍ତ୍ରୀଟି ଆଲୁଅ ଜଳାଇଥିଲେ ଓ ତାଙ୍କ ପତି ତାକୁ ଲିଭାଇଦେଲେ । ଏଥିରେ ଝଗଡ଼ା ଆରମ୍ଭ ହୋଇଯାଏ । କିଛି ସମୟପରେ ଥକି ଯାଇ

ଦୁହେଁ ଶୋଇପଡ଼ନ୍ତି । କିନ୍ତୁ ପରସ୍ପର ପ୍ରତି ଦ୍ୱେଷପୂର୍ଣ୍ଣ ବିଚାର ମନ ମଧ୍ୟରେ ରହିଯାଏ ଓ ପରଦିନ ମଧ୍ୟ ସୁବିଧା ମିଳିଲା ମାତ୍ରେ ଝଗଡ଼ା ଆରମ୍ଭ ହୋଇଯାଏ । ସେମାନଙ୍କ ମଧ୍ୟରେ ପରସ୍ପରକୁ ବୁଝିବାର କ୍ଷମତାର ଅଭାବ ଥିଲା ।

ସ୍ତ୍ରୀଜଣକ ନିଜ ମୁଣ୍ଡପାଖରେ ଗୋଟିଏ ଟେବୁଲ ଲ୍ୟାମ୍ପ ରଖି ପାରିଥାଆନ୍ତେ, ଯେଉଁଥିରେ ବି ପତିଙ୍କର ନିଦରେ ବାଧା ଉପୁଜି ନଥାଆନ୍ତା । କିନ୍ତୁ ଦୁଇଜଣଙ୍କ ମଧ୍ୟରେ ଅହଂର ସମସ୍ୟା ଥିଲା । କାହିଁକି ନା ଅହଂକାର କେବେବି ହାର ମାନିବାକୁ ଚାହେଁ ନାହିଁ ।

ଜଣେ ବ୍ୟକ୍ତି ଜଳଖିଆ ଖାଉଥିଲେ । ସେହି ସମୟରେ ତାଙ୍କ ପତ୍ନୀ ଗାଧୁଆଘରୁ ବାହାରିଲେ । ସେ ବିରକ୍ତ ଥିବା ପରି ଜଣାପଡୁଥିଲେ । ସେ ଯେତେବେଳେ ଗାଧୁଆଘର ମଧ୍ୟକୁ ଯାଇଥିଲେ ସେତେବେଳେ ଭଲ ମୁଡ୍‌ରେ ଥିଲେ । ମନ ଖରାପର କାରଣ ପଚାରିବାରୁ ସେ କହିଲେ, "ନାହିଁ କିଛି ନାହିଁ," ସ୍ୱାମୀ ପୁଣି ଆଗ୍ରହ ପ୍ରକାଶ କରି ପଚାରିଲେ, କିଛି ନା କିଛି ତ ନିଶ୍ଚୟ ହୋଇଛି, ମୋତେ କୁହ । ପତ୍ନୀ କହିଲେ, ଠିକ୍ ଅଛ, କହୁଛି ।"

"ମୁଁ ତୁମକୁ କେତେଥର କହିଛି ଯେ ଟୁଥପେଷ୍ଟ ଟ୍ୟୁବର ମଝିକୁ ନ ଚିପିବାକୁ କେତେଥର କହିଛି । ତୁମେ ତାକୁ ଗୋଟିଏ ପାଖରୁ କାହିଁକି ଚିପୁନାହଁ ?" ପତି କହିଲେ, "ମଝିରୁ ଚିପିଲେ ଅସୁବିଧା କ'ଣ ?"

ଏହିପରି ଝଗଡ଼ା ଆରମ୍ଭ ହେଲା ଓ ବହୁତ ସମୟ ପର୍ଯ୍ୟନ୍ତ ଚାଲିଲା । ଆପଣଙ୍କୁ ମଧ୍ୟ ଲାଗୁଥିବ ଯେ ଦୁହିଁଙ୍କ ମଧ୍ୟରେ ପରସ୍ପରକୁ ବୁଝିବାର ଭାବନା ନାହିଁ । ସବୁ ସମସ୍ୟାର ସମାଧାନ ଅଛି । ପତ୍ନୀଜଣକ ନିଜ ପାଇଁ ଅଲଗା ଟୁଥପେଷ୍ଟର ଟ୍ୟୁବ ରଖିପାରନ୍ତେ କିନ୍ତୁ ଏଠାରେ ମଧ୍ୟ ଅହଂର ସମସ୍ୟା ଅଛି । ଅହଂ କେବେବି ହାର ମାନେ ନାହିଁ ।

ଏକ ଦମ୍ପତି ମୋତେ ନିଉୟର୍କରେ ଦେଖା କରିବାକୁ ଆସିଥିଲେ । ପତ୍ନୀଜଣକ ଅଭିଯୋଗ କଲେକି, ତାଙ୍କର ପତି ନିଜ କାମରେ ଏତେ ବ୍ୟସ୍ତ ରହୁଛନ୍ତି ଯେ ତାଙ୍କ ପାଇଁ ସେ ସମୟ ଦେଇପାରୁ ନାହାନ୍ତି । ସେ ନିଜକୁ ଉପେକ୍ଷିତ ଓ ଅଲୋଡ଼ା ବୋଲି ଅନୁଭବ କରୁଛନ୍ତି । ପତି ନିଜର ସପକ୍ଷରେ କିଛି କହିଲେ ନାହିଁ । ସେ କହିଲେ, "ସେ ଠିକ୍ କହୁଛନ୍ତି । ଏବେ ମୁଁ ପ୍ରତିଶ୍ରୁତି ଦେଉଛି

ଯେ ପ୍ରତ୍ୟେକ ବୁଧବାର ସଂଧ୍ୟାରେ ମୁଁ ତାଙ୍କୁ ସିନେମା କିମ୍ବା ସେ ଯେଉଁଆଡ଼େ ଗହିଁବେ ତାଙ୍କୁ ବୁଲାଇ ନେବି ।" ଏହି ପଦକ୍ଷେପ ଠିକ ବାଟରେ ଥିଲା । ପ୍ରତି ବୁଧବାର ସେ ନିଜ ପତ୍ନୀଙ୍କୁ ବୁଲାଇବାକୁ ନେଇଯାଇଥିଲେ, ତା ସତ୍ତ୍ୱେ ପତ୍ନୀଙ୍କୁ ବୁଝିବାକୁ ଚେଷ୍ଟା ସେ କରି ନଥିଲେ । ପତ୍ନୀ ଚାହୁଥିଲେ କି ତାଙ୍କ ପତି ତାଙ୍କୁ ଠିକ୍ ଭାବରେ ବୁଝନ୍ତୁ ।

ଆମେ ପ୍ରତିଦିନ ଏକାଠି ବୁଲିବାକୁ ଯାଇପାରୁ, କିମ୍ବା ବର୍ଷ ବର୍ଷ ଧରି ଏକାଠି ରହିପାରୁ କିନ୍ତୁ ଯଦି ପରସ୍ପରକୁ ବୁଝିବାର ଭାବନା ନାହିଁ ତେବେ ଆମେ ପରସ୍ପରର ନିକଟତର ହୋଇପାରିବା ନାହିଁ । ଅନେକ ଉଚ୍ଚଶିକ୍ଷିତ ଓ ନାମଜାଦା ପରିବାରମାନଙ୍କର ଏହାହିଁ ସମସ୍ୟା ।

ଅଧିକାଂଶ ନାମଜାଦା ପରିବାରର ଲୋକ, ସଫଳ ବ୍ୟବସାୟୀ, ବଡ଼ ବଡ଼ ଶିଳ୍ପପତି ଓ ଜ୍ଞାନୀ ଲୋକଙ୍କ ପରିବାର ମଧ୍ୟରେ ପରସ୍ପର ବୁଝାବଣାର ଅଭାବ ଅଛି । ପରସ୍ପର ବୁଝାବଣା ପରସ୍ପରକୁ ନିକଟତର କରାଇ ଏପରି ସୂତ୍ରରେ ବାନ୍ଧିପାରେ ଯାହାକୁ ଜୀବନର ଅନିଶ୍ଚିତତା ମଧ୍ୟ ଛିଣ୍ଡାଇ ପାରେ ନାହିଁ ।

ଆଜିକାଲି ଭାବନାତ୍ମକ ଅସାମଞ୍ଜସ୍ୟ ବିଷୟରେ ଆମେ ଅନେକ କଥା ଶୁଣୁଛେ । ମୁଁ କିନ୍ତୁ ଏହାକୁ ମାନେ ନାହିଁ, ଏହାକୁ ଗୋଟିଏ ମନଗଢ଼ା କଥା ବୋଲି ଭାବେ । ଏସବୁ ଓକିଲ ଓ ଜଜ୍‌ମାନଙ୍କ ଦ୍ୱାରା ପ୍ରଚାର କରାଯାଉଥିବା ଭ୍ରମଜାଲ, ଯାହାଦ୍ୱାରା କି ଛାଡ଼ପତ୍ର କ୍ଷେତ୍ରରେ ଯୁକ୍ତି ଉପସ୍ଥାପନା କରାଯାଇପାରେ । ଭାବନାତ୍ମକ ଅସାମଞ୍ଜସ୍ୟ ବୋଲି କୌଣସି ଜିନିଷ ନାହିଁ । କେବଳ ଭୁଲବୁଝାବଣା ଓ ତ୍ରୁଟିମାନ ହୋଇଯାଏ । ଯାହାକୁ କି ଆମେ ଚାହିଁଲେ ସୁଧାରି ପାରିବା । ମହିଳାମାନେ ମୋ' ପାଖରେ ଅଭିଯୋଗ କରନ୍ତି "ବିବାହ ପୂର୍ବରୁ ଆମେ ଯେବେ ଦେଖା କରୁଥିଲୁ ମନେ ହେଉଥିଲା ଯେ ଆମେ ପରସ୍ପରକୁ ଠିକ୍ ଭାବରେ ବୁଝିଛୁ । ଆମର ପତି କହୁଥିଲେ କି ଆମେ 'ଏକ ଦୁଜେ କେ ଲିୟେ' କିନ୍ତୁ ଏବେ ଆମର କ'ଣ ହୋଇଯାଇଛି । ଏପରି କାହିଁକି ହେଲା ?" ସିଧା କଥା ହେଲା, ବିବାହ ପୂର୍ବରୁ ପରସ୍ପର କଥାବାର୍ତ୍ତା କରୁଥିଲେ । ନିଜର ହୃଦୟର କଥା ଶୁଣାଉଥିଲେ ଓ ଅନ୍ୟର ହୃଦୟକୁ ବୁଝୁଥିଲେ ।

## ପରିଚ୍ଛେଦ - ତିନି

# ସାତଟି ବ୍ୟାବହାରିକ ପରାମର୍ଶ

ପାରସ୍ପରିକ ବୁଝାବଣା ଭାବନାର ବିକାଶ ପାଇଁ ମୁଁ ଆପଣଙ୍କୁ କେତୋଟି ପରାମର୍ଶ ଦେବାକୁ ଋହୁଁଛି । ପରସ୍ପର ବୁଝାବଣାରୁ ସାମଞ୍ଜସ୍ୟ ଜନ୍ମନିଏ ଓ ସାମଞ୍ଜସ୍ୟ ହେଉଛି ସଙ୍ଗୀତର ମୂଳ । ଯେପରି ସଙ୍ଗୀତରେ ସାତ ସ୍ୱର ଅଛି, ସେହିପରି ପରସ୍ପରକୁ ବୁଝାବଣାର ସୁମଧୁର ସଙ୍ଗୀତରେ ମଧ୍ୟ ସାତଟି ସ୍ୱର ରହିଛି । ମୁଁ ଆପଣମାନଙ୍କୁ ସାତଟି ବ୍ୟାବହାରିକ ପରାମର୍ଶ ଦେବାକୁ ଚାହୁଁଛି । ଏହା ଜରୁରୀ ନୁହେଁ ଯେ ଆପଣ ଏହି ସାତଟିଯାକ ଏକ ସଙ୍ଗେ ପ୍ରୟୋଗ କରିବା ଆରମ୍ଭ କରିଦେବେ । ଏଥିରୁ ଯଦି ଗୋଟିଏ ବି ଆପଣ ଦୈନନ୍ଦିନ ଜୀବନରେ ପ୍ରୟୋଗ କରିପାରିବେ, ସେଥିରେ ମଧ୍ୟ ବହୁତ ଲାଭ ହେବ ।

## ପରାମର୍ଶ-୧

### ଭଲ ଶ୍ରୋତା ହେବାକୁ ଶିଖନ୍ତୁ -

ଯଦି ପରସ୍ପର ବୁଝାବଣା ଭାବନାର ବିକାଶ ଚାହୁଁଛନ୍ତି ତେବେ ପ୍ରଥମେ ଭଲ ଶ୍ରୋତାଟିଏ ହୁଅନ୍ତୁ । ସାମନାରେ ଥିବା ବ୍ୟକ୍ତିଙ୍କୁ କହିବାକୁ ସୁଯୋଗ ଦିଅନ୍ତୁ । ନିଜ କଥା କହିବାକୁ ଓ ପ୍ରମାଣ କରିବାକୁ ତାଙ୍କୁ ସୁଯୋଗ ଦିଅନ୍ତୁ । ତାଙ୍କୁ କହିବା ମଝିରେ ବାଧା ଦିଅନ୍ତୁ ନାହିଁ । ଆପଣ ଜାଣନ୍ତି ଯେ, ଯେତେବେଳେ ଆପଣ ନିଜର ମତାମତ ଉପସ୍ଥାପନ କରୁଥାଆନ୍ତି ଓ ମଝିରେ କିଏ କିଛି କହିଦିଏ, ତେବେ କେତେ ରାଗ ଲାଗେ ।

ଯେ କୌଣସି କମିଟିର ବୈଠକକୁ ଯାଅ ଶୁଣିବାକୁ ପାଇବ - "ହେଲେ ମୋ କଥା ସରିବାକୁ ଦିଅ ।" ଅଧିକ ଶୁଣ, କମ୍ କୁହ । ଆମେ ସବୁ ଶୁଣିବାକୁ ଜନ୍ମ ନେଇଛେ । ସେଥିପାଇଁ ଆମକୁ ଗୋଟିଏ ମୁଖ ଓ ଦୁଇଟି କାନ ମିଳିଛି । ଯଦି ଆମର ଜନ୍ମ ବହୁତ କଥା କହିବାକୁ ଓ କମ୍ ଶୁଣିବାକୁ ହୋଇଥାଆନ୍ତା ତେବେ ସାମନାରେ ଗୋଟିଏ କାନ ଓ ମୁଣ୍ଡ ଦୁଇପାଖରେ ଦୁଇଟି ପାଟି ଥାଆନ୍ତା । ତା ହୋଇଥିଲେ ଆମେ କେତେ ହାସ୍ୟାସ୍ପଦ

ଦେଖାଯାଆନ୍ତେ । ସାମନାରେ ଥିବା କାନକୁ ବନ୍ଦ କରିବାକୁ କିଛି ନ ଥାଆନ୍ତା ତାହା ସବୁବେଳେ ଖୋଲା ରହନ୍ତା । କୌଣସି ଶବ୍ଦ ଉଚ୍ଚାରଣ କରିବା ପୂର୍ବରୁ ଦୁଇଟି ପାଚେରୀ ଅତିକ୍ରମ କରିବାକୁ ପଡ଼ିଥାଏ । ପ୍ରଥମେ ଦାନ୍ତର ଦୁଇଟି ଧାଡ଼ି ଓ ପରେ ଦୁଇଟି ଓଠ । ସେଥିପାଇଁ କହିବା ପୂର୍ବରୁ ଦୁଇଥର ଭାବିବା ଉଚିତ । ଏହା କେବେ ବି ଭୁଲିବ ନାହିଁ ଯେ ତୁମେ ହେଉଛ ଅକୁହା ଶବ୍ଦର ମାଲିକ ଓ କୁହାଯାଇଥିବା ଶବ୍ଦର ଗୁଲାମ । ଥରେ କୁହାଯାଇଥିବା ଶବ୍ଦ ଫେରାଇ ନେଇ ହୁଏ ନାହିଁ ।

ମୋର ଗୋଟିଏ ମଜା କଥା ମନେ ପଡୁଛି । ଥରେ ଜଣେ ଗାଉଁଲି ବ୍ୟକ୍ତି ନିଜର ସମ୍ପର୍କୀୟକୁ ଦେଖା କରିବାକୁ ସହରକୁ ଯାଇଥିଲେ । ଏବେ ମଧ୍ୟ ଗାଁ ମାନଙ୍କରେ ଦାନ୍ତ କାଠିରେ ଦାନ୍ତ ଘଷୁଛନ୍ତି । ସକାଳୁ ସେ ଉଠି ଦାନ୍ତକାଠି ମାଗିଲେ । ତାଙ୍କୁ କୁହାଗଲା କି ସହରରେ ଟୁଥପେଷ୍ଟରେ ଦାନ୍ତ ସଫା କରାଯାଏ । ସେ ଗାଉଁଲି ବ୍ୟକ୍ତି ଜଣକ କେବେବି ଟୁଥପେଷ୍ଟ ବ୍ୟବହାର କରିନଥିଲେ । ସେ ଯେପରି ପେଷ୍ଟର ଟ୍ୟୁବକୁ ଜୋରରେ ଚିପି ଦେଇଛନ୍ତି ତା ମଧ୍ୟରୁ ଏକ ଫୁଟ ଲମ୍ବାର ପେଷ୍ଟ ବାହାରି ଆସିଲା ।

ସେ ବିଚଳିତ ହୋଇ ଘର ଲୋକଙ୍କୁ ପଚାରିଲେ - "ଏହି ପେଷ୍ଟକୁ ଟ୍ୟୁବ ମଧ୍ୟକୁ ପୁଣି କିପରି ପୁରାଯିବ ?" ସେମାନେ କହିଲେ - "ତାହା ହୋଇପାରିବ ନାହିଁ । ଥରେ ପେଷ୍ଟ ବାହାରକୁ ଆସିଗଲେ ଆଉ ତାକୁ ଭର୍ତ୍ତି କରି ହେବ ନାହିଁ ।" ଠିକ୍ ସେହିପରି କୁହାସରିଥିବା ଶବ୍ଦକୁ ଫେରାଇ ନେଇହେବ ନାହିଁ ।

ଭଲ ଶ୍ରୋତା ହୁଅନ୍ତୁ । ସେଥିପାଇଁ କେବଳ କାନରେ ନୁହେଁ ହୃଦୟରେ ମଧ୍ୟ ଶୁଣନ୍ତୁ । ଶୁଣିବା କହିବା ଠାରୁ ଉତ୍ତମ ଓ ଶୁଣିବାଠାରୁ ମଧ୍ୟ ନିଜ ହୃଦୟର ମୌନତା ମଧ୍ୟରେ ପ୍ରବେଶ କରିବା ଆହୁରି ଭଲ ।

ଦକ୍ଷିଣ ଭାରତର ମହାନ ମହିଳା ସନ୍ଥ ଅଭୟାର ପ୍ରାର୍ଥନା କରୁଥିଲେ - "ହେ ଈଶ୍ୱର, ମୋର କ'ଣ ହେଉଛି ? ମୁଁ ଏତେ କଥା କହୁଛି, ସତେ ଯେପରି ମୋ' ଶରୀର ସାରା ମୁହଁ ହିଁ ଅଛି । ମୋ ହୃଦୟର ମୌନତାକୁ ମୁଁ କେବେ ପ୍ରବେଶ କରିବି ?"

ପରାମର୍ଶ - ୨

ଅନ୍ୟ ବ୍ୟକ୍ତିକୁ ଅନାଦାର କର ନାହିଁ । ତାଙ୍କ ସହିତ ହୀନ ପ୍ରାଣୀ ପରି ବ୍ୟବହାର କରନାହିଁ । ତାଙ୍କର ସମାଲୋଚନା କର ନାହିଁ କିମ୍ବା ତାଙ୍କର ଦୋଷ ଦେଖ ନାହିଁ ।

କେହିବି ନିଜର ସମାଲୋଚନାକୁ ଭଲ ପାଆନ୍ତି ନାହିଁ, ସେଥିପାଇଁ ନିଜ ସାମନାରେ ଥିବା ବ୍ୟକ୍ତିର ଗୁଣକୁ ଦେଖ ଓ ତାଙ୍କୁ ପ୍ରଶଂସା କର । ଆପଣ ତାଙ୍କର ପ୍ରଶଂସା କରୁଥିବା ସମୟରେ ତାଙ୍କର ଭଲ ଗୁଣ ଗୁଡ଼ିକ ଉଜାଗର ହୁଏ । ସେଥିପାଇଁ ନିଜର ବନ୍ଧୁମାନଙ୍କର ଜୀବନ ସାଥୀର ଓ ସନ୍ତାନ ମାନଙ୍କର ପ୍ରଶଂସା କରନ୍ତୁ । ପିଲାମାନଙ୍କୁ କେବେବି ଗାଳି ଦିଅନ୍ତୁ ନାହିଁ । ଆପଣ ଯେତେବେଳେ ସେମାନଙ୍କୁ ଗାଳି ଦିଅନ୍ତି, ସେତେବେଳେ ସେମାନଙ୍କର ଭିତରର ପ୍ରାଣ ଶକ୍ତିକୁ ଦବାଇ ଦିଅନ୍ତି ।

- "ତୁମର ନାମ କଣ ?" ସେ ଉତ୍ତର ଦେଲା - ସ୍କୁଲରେ ମୋତେ ରମେଶ କହନ୍ତି, ଘରେ ମୋତେ କହନ୍ତି, ରମେଶ କର ନାହିଁ ।" ମୋତେ ଏକଥା କିଛି ବୁଝା ପଡ଼ିଲା ନାହିଁ । ସେ ପୁଣି କହିଲା - "ସ୍କୁଲରେ ସମସ୍ତେ ମୋତେ ରମେଶ ବୋଲି ଡ଼ାକନ୍ତି । କିନ୍ତୁ ଯେତେବେଳେ ମୁଁ ଘରେ ଥାଏ, ସମସ୍ତେ କହନ୍ତି, ରମେଶ ଏହା କର ନାହିଁ, ରମେଶ ଏହା କୁହ ନାହିଁ, ରମେଶ ଏପରି ବସ ନାହିଁ ।"

ନିଜ ପିଲାମାନଙ୍କର ପ୍ରଶଂସା କର । ନିଜ ପତି କିମ୍ବା ପତ୍ନୀଙ୍କର ପ୍ରଶଂସା କର । ସ୍ତ୍ରୀଲୋକମାନେ ମୋ' ପାଖରେ କି

ଅଭିଯୋଗ କରନ୍ତି - "ଏମିତି ଗୋଟିଏ ସମୟ ଥିଲା ଯେତେବେଳେ ଆମର ପତି ଅନେକ ପ୍ରତିଶ୍ରୁତି ଦେଉଥିଲେ, କିନ୍ତୁ ସେ ସବୁ ବର୍ତ୍ତମାନ ଇତିହାସରେ ପରିଣତ ହୋଇଗଲାଣି । ଏବେ ତ ସେ ଆମ ପ୍ରତି ଧ୍ୟାନ ମଧ୍ୟ ଦେଉନାହାନ୍ତି । ଆମ କଥାକୁ ଗୁରୁତ୍ୱ ଦେଉନାହାନ୍ତି ।"

ଆଜି ରାତିରେ ଯେତେବେଳେ ତୁମେମାନେ ଘରକୁ ଫେରିବ, ନିଜ ଜୀବନସାଥୀଙ୍କୁ କହିବ - "ପ୍ରିୟ, ତୁମ ବିନା ମୋର ଅବସ୍ଥା କ'ଣ ହୋଇଥାଆନ୍ତା ?" ଏହି ସିଧା ସାଧା କେତୋଟି ଶବ୍ଦ ଚମତ୍କାର କରିପାରେ, ମୁଁ ଯେତେବେଳେ ହଂକଙ୍ଗରେ ଥିଲି, ଗୋଟିଏ ପ୍ରବଚନ ସଭାରେ ସେଠାକାର ଜଣେ ପ୍ରସିଦ୍ଧ ବ୍ୟକ୍ତି ସଭାପତିତ୍ୱ କରୁଥିଲେ । ସେହି ସଭାରେ ମଧ୍ୟ ମୁଁ ସେହି ପରାମର୍ଶ ଦେଲି । ସଭାପତି ପରଦିନ ମୋତେ ଦେଖାକଲେ ଓ କହିଲେ - "ସତରେ ଆପଣ କାଲି ଯାହା କହିଲେ, ସେହି ଶବ୍ଦଗୁଡ଼ିକ ଚମତ୍କାର କରି ଦେଖାଇଲା । କାଲି ଘରକୁ ଫେରି ମୋର ପତ୍ନୀଙ୍କୁ କହିଲି, ପ୍ରିୟେ ତୁମ ବିନା ମୋର ଅବସ୍ଥା କ'ଣ ହୋଇଥାଆନ୍ତା ?" ପ୍ରଥମେ ସେ କିଛି ବୁଝି ପାରିଲେ ନାହିଁ ।

ତାଙ୍କ ଚେହେରାରେ କିଛି ଭାବ ନଥିଲା । କିନ୍ତୁ ଧୀରେ ଧୀରେ ଯେତେବେଳେ ଶବ୍ଦଗୁଡ଼ିକର ଅର୍ଥ ସ୍ପଷ୍ଟ ହେବାକୁ ଲାଗିଲା, ସେତେବେଳେ ତାଙ୍କର ଚେହେରା ପ୍ରଫୁଲ୍ଲିତ ହୋଇ ଉଠିଲା ଓ ତାଙ୍କ ଆଖିରେ ଏକ ଅଦ୍ଭୁତ ଚମକ ଆସିଗଲା । ସେହିଦିନଠାରୁ ଆମ ଘରର ବାତାବରଣ ବଦଳି ଯାଇଛି ।

**ପରାମର୍ଶ - ୩**

ଯଦି କାହା ସହିତ ତୁମର ମନ ମେଳ ନ ଖାଇଲା, ତେବେ ତାକୁ ଦୋଷ ଦିଅ ନାହିଁ । ନିଜ ଭିତରେ ଥିବା ଦୋଷକୁ ଖୋଜ ।

ଅନ୍ୟଠାରେ ଦୋଷ ଦେଖିବା ସହଜ, କିନ୍ତୁ ଏଥିରେ କିଛି ଲାଭ ନାହିଁ । ଯଦି ଆପଣ ଦେଖୁଛନ୍ତି କି ସମ୍ପର୍କ ଠିକ୍ ରହୁନାହିଁ, ତେବେ ନିଜକୁ ପଚାରିବା ଉଚିତ, "ମୁଁ କ'ଣ କରିଛି ? ମୋର କେଉଁଠାରେ ଦୋଷ ରହିଗଲା ?" ଆପଣ ଦେଖିବେ ଅନ୍ୟ ସହିତ ଆପଣଙ୍କର ସମ୍ପର୍କ ଭଲ ହୋଇଯିବ ।

**ପରାମର୍ଶ - ୪**

ବିନମ୍ରତା ବିନା ସାମଞ୍ଜସ୍ୟ ସମ୍ଭବ ନୁହଁ ।

ବିନମ୍ର ହେଲେ ଯାଇ ଆପଣ କାହାକୁ ଠିକ୍ ଭାବରେ

ବୁଝିପାରିବେ । ଇଂରାଜୀ "understand" କୁ ଓଲଟାଇ "stand under" ଲେଖିଲେ ତାହାର ଅର୍ଥ ହେବ ତଳେ ଠିଆହେବା, ଅର୍ଥାତ୍ କାହାଠାରୁ ଛୋଟ ହୋଇଯିବା । ଭୁଲବୁଝାବଣାର ଏହାହିଁ ବଡ଼ କାରଣ ।

ବିନମ୍ର ବ୍ୟକ୍ତି ଅନ୍ୟକୁ କେବେବି ଭୁଲ ବୁଝିବ ନାହିଁ । ସେ ନିଜକୁ କେବେବି ସର୍ବୋଚ୍ଚ ଭାବି ନାହିଁ । ସେ ନିଜକୁ ଅନ୍ୟଠାରୁ କେତେ ଲୋକଙ୍କର କଥାବାର୍ତ୍ତାରେ ମୁଁ ଶବ୍ଦ ଭର୍ତ୍ତି ହୋଇ ରହିଥାଏ । ମୁଁ ଏହା କରିଛି, ମୁଁ ତାହା କରିଛି, ମୁଁ ଏହା ଦେବି, ମୁଁ ତାହା ଦେଇଛି, ମୁଁ ଏହା ପାଇଛି, ମୁଁ ତାହା ପାଇଛି । ବିନୀତ ଲୋକ "ମୁଁ" ଶବ୍ଦର ପ୍ରୟୋଗ କରନ୍ତି ନାହିଁ । ତାଙ୍କର କଥାବାର୍ତ୍ତାରେ ଆମେ ଓ "ଆପଣ" ଶବ୍ଦର ପ୍ରୟୋଗ ହେଉଥାଏ ।

ଗାୟିକା ମେରି ଆଣ୍ଡରସନ, ମୁଁ ସ୍ଥାନରେ "ଆମେ" ବା "ଏକ" ବ୍ୟବହାର କରୁଥିଲେ । ଯେତେବେଳେ ତାହାର କାରଣ ପଚରା ଗଲା, ସେ କହିଲେ - "ଜଣକର ବୟସ ଯେତିକି ଯେତିକି ବଢ଼େ, ତାକୁ ମାଲୁମ ହୁଏକି ଏକୁଟିଆ କୌଣସି ମଧ୍ୟ କାମ ହୁଏ ନାହିଁ । କୌଣସି କାର୍ଯ୍ୟକୁ ପୂରା କରିବାରେ ବହୁତ

ଲୋକମାନଙ୍କର ହାତଥାଏ । ଏହିପରି "ମୁଁ"ର ସ୍ଥାନ ସେଥିରେ ଅତ୍ୟନ୍ତ ଛୋଟ । ଜାଆଁଳା ପିଲାଙ୍କର ଜଣେ ମା' ନିଜ ପିଲାମାନଙ୍କ ମଧ୍ୟରେ କଥାବାର୍ତ୍ତା ଶୁଣୁଥିଲେ । ଜଣେ ପିଲା କହିଲା, "ମନେ ରଖ "ମୁଁ" ତ "ମୁଁ" ଅଟେ । "ତୁ" କେବଳ "ତୁ" ଅଟୁ । ଅନ୍ୟ ଜଣକ ସଙ୍ଗେ ସଙ୍ଗେ କହିଲା "ନାଁ, ମୁଁ ହିଁ ମୁଁ, ତୁ କେବଳ ତୁ ଅଟୁ ।

ପ୍ରଥମ ପିଲାଟି ଆହୁରି ଜୋରରେ କହିଲା "ମୁଁ ତୋତେ କହିଲି ନା ମୁଁ "ମୁଁ" ଅଟେ, ତୁ କେବଳ "ତୁ" ଅଟୁ ।" ଏହିପରି ଚାଲିଲା । ଦୁହିଁଙ୍କୁ ଏତେ ରାଗ ଆସିଗଲାକି ମାଡ଼ଗୋଳ ପର୍ଯ୍ୟନ୍ତ କଥା ଗଲା । ଆମେ ମଧ୍ୟ ପ୍ରତିଦିନ ଏହି ଜାଆଁଳା ପିଲାଙ୍କ ପରି ବ୍ୟବହାର କରୁଛେ । ସବୁ ସମୟରେ "ମୁଁ" "ମୁଁ" "ମୁଁ" ବକି ଚାଲିଛେ । ଅହଂ ନିଜର ଖେଳ ଖେଳିଚାଲେ ଓ ନିଜର ଗୀତ ଗାଇ ଚାଲେ । ଅହଂ ହିଁ ଆମର ସମସ୍ତ ଭୁଲ ବୁଝାବଣା ତଥା ଅପାର ଦୁଃଖର କାରଣ ।

ପ୍ରସିଦ୍ଧ ଅଭିନେତା ଓ ସିନେମା ନିର୍ମାତା ଓସ୍କାର ହାମରଷ୍ଟେନ "ଭେରାଇଟି" ନାମକ ପତ୍ରିକାର କ୍ରିସମାସ ସଂଖ୍ୟାରେ

ଗୋଟିଏ ବିଜ୍ଞାପନ ଦେଇଥିଲେ । ସେହି ପତ୍ରିକାରେ ଅଭିନେତା ତଥା ସିନେମା ନିର୍ମାତା ନିଜର ସଫଳତାର କାହାଣୀ ପ୍ରକାଶ କରନ୍ତି । ସେହି ବିଜ୍ଞାପନରେ ଓସ୍କାର ନିଜର ସଫଳତା ବିଷୟରେ କିଛି କହି ନ ଥିଲେ । ସେ ନିଜର ପାଞ୍ଚଟି ଅସଫଳତା ବିଷୟରେ ବର୍ଣ୍ଣନା କରିଥିଲେ ଓ ତା ତଳେ ବଡ଼ ବଡ଼ ଅକ୍ଷରରେ ଲେଖିଥିଲେ, "ମୁଁ ଆଗରୁ ଏପରି କରିଛି ଓ ପୁଣି କରିପାରେ ମଧ୍ୟ ।"

ମାନବ ଇତିହାସର ସବୁ ମହାପୁରୁଷ ବା ସ୍ତ୍ରୀ ବିନମ୍ର ଅଟନ୍ତି । ଥରେ ସନ୍ଥ ଫ୍ରାନ୍‌ସିସ୍‌ଙ୍କୁ ଲୋକମାନେ ପଚାରିଲେ - "କୁହନ୍ତୁ, ସାରା ଦୁନିଆ ଆପଣଙ୍କ ପଛରେ କ'ଣ ପାଇଁ ଦୌଡ଼ୁଛି ? ଆପଣ ସୁନ୍ଦର ନୁହଁନ୍ତି । ଜ୍ଞାନୀ ମଧ୍ୟ ନୁହଁନ୍ତି । ଆପଣ ଧନୀ ନୁହଁନ୍ତି ବା କୌଣସି ଉଚ୍ଚ ପଦ ପଦବୀରେ ମଧ ନାହାନ୍ତି ।"

ସନ୍ଥ ଫ୍ରାନ୍‌ସିସ୍ ନମ୍ରତା ସହକାରେ କହିଲେ - "ମୋ'ଠାରେ କିଛି ନାହିଁ । ଏସବୁତ ଈଶ୍ୱରଙ୍କ କୃପା ।" ଲୋକମାନେ ପୁଣି ପଚାରିଲେ, "ଏପରି କି କଥା ଅଛି ଯେ, ନିଜର କୃପା ଦୃଷ୍ଟି ବର୍ଷିବାକୁ ଈଶ୍ୱର ଆପଣଙ୍କୁ ହିଁ ବାଛିଲେ ?" ସନ୍ଥ ଜବାବ ଦେଲେ - "ଏହା ପ୍ରମାଣିତ କରିବାକୁ କି ତାଙ୍କର

କୃପା କ'ଣ କରି ନପାରେ । ଈଶ୍ୱର ପୃଥିବୀର ସବୁଠାରୁ ଅଧମ ବ୍ୟକ୍ତିର ସନ୍ଧାନରେ ଥିଲେ । ତାଙ୍କୁ ମୋ'ଠାରୁ ଅଧିକ ଅଧମ ବ୍ୟକ୍ତି ମିଳିଲେ ନାହିଁ ।

**ପରାମର୍ଶ - ୫**

**ପରସ୍ପର ବୁଝାବଣା ରଖୁଥିବା ବ୍ୟକ୍ତି ତର୍କ ବିତର୍କ କରନ୍ତି ନାହିଁ ।**

ଏହା ସତ୍ୟ ଯେ ତର୍କରେ କେହି ଜିତେ ନାହିଁ । ଯଦି କେବେବି, ଆପଣ ଭାବନ୍ତି ଯେ ଯୁକ୍ତିତର୍କରେ ଆପଣ ଜିତି ଯାଇଛନ୍ତି, କେବେ କେବେ ନା କେବେ ଆପଣ ବୁଝିପାରିବେ ଯେ ସେ ଆପଣଙ୍କ ସହିତ ସହମତ ହୋଇ ନାହାନ୍ତି । ଯୁକ୍ତିକରି ସେ ଆପଣଙ୍କ ପାଖରେ ଥକି ଯାଇଛନ୍ତି । ଏହି କ୍ରମରେ ଆପଣ ଆପଣଙ୍କ ମିତ୍ରକୁ ହରାଇ ବସିଛନ୍ତି ।

ବ୍ୟକ୍ତି ଚାଳିଶ ବର୍ଷ ପର୍ଯ୍ୟନ୍ତ ନିଜର ଏକମାତ୍ର ଭାଇ ସହିତ କୌଣସି ସମ୍ପର୍କ ରଖି ନଥିଲେ । କାରଣ ସେ ଭାଇକି ସମ୍ମାନ ଓ ପ୍ରେମ ପାଇବା ଅପେକ୍ଷା ଜିଣିବା ଅଧିକ ପସନ୍ଦ କରୁଥିଲେ ।

## ପରାମର୍ଶ - ୬

ବୁଝାବଣା ରଖୁଥିବା ବ୍ୟକ୍ତି ଜାଣେ ଯେ ମତଭେଦ ଥିଲେ ମଧ୍ୟ ସହମତ ହେବା ଜରୁରୀ ।

ମତ ନ ହେଲେ ମଧ୍ୟ ଅନ୍ୟର ବିଚାରକୁ ସେ ସମ୍ମାନ କରନ୍ତି । ସେ ନିନ୍ଦା କିମ୍ବା ଚୁଗୁଲି କରନ୍ତି ନାହିଁ । ନିଜକୁ କିମ୍ବା ନିଜର ସାଥୀଙ୍କୁ ଅନ୍ୟମାନଙ୍କ ସହିତ ତୁଳନା କରନ୍ତି ନାହିଁ । ସେ ନିଜର ଅହଂ ଭୁଲି ଯାଆନ୍ତି । ତାଙ୍କର କଥା ଓ କାମ ଏକପ୍ରକାର ।

ଅନ୍ୟକୁ ପରାମର୍ଶ ଦେବା ସହଜ । ନିଜ ସାଙ୍ଗ ସାଥିମାନଙ୍କୁ ଏହାକର, ତାହା କର ନାହିଁ ବୋଲି ବୁଝାଇବା ମଧ୍ୟ ସହଜ । କିନ୍ତୁ ଆପଣ ଯାହା କହୁଛନ୍ତି ସେହିପରି କାର୍ଯ୍ୟ ଯଦି ନ କରନ୍ତି ତେବେ କେହିବି ଆପଣଙ୍କ କଥା ଶୁଣିବେ ନାହିଁ ।

ଜଣେ ମା' ଦିନେ ଆସି ମହାତ୍ମା ଗାନ୍ଧିଙ୍କୁ ଦେଖାକଲେ ଓ କହିଲେ - "ମୋ ପୁଅର କିଡ଼ନି ଖରାପ ଅଛି । ଡ଼ାକ୍ତର ତାକୁ ଲୁଣ ନ ଖାଇବାକୁ କହିଛନ୍ତି । କିନ୍ତୁ ସେ ମୋ' କଥା ମାନୁନାହିଁ । ସେ ଆପଣଙ୍କର ଜଣେ ଭକ୍ତ ଓ ଆପଣଙ୍କ କଥା ନିଶ୍ଚୟ ମାନିବ ।"

ମହାତ୍ମା ଗାନ୍ଧି କହିଲେ - "ସପ୍ତାହକ ପରେ ତୁମେ ପୁଅକୁ ଆଣି ମୋ'ପାଖକୁ ଆସିବ ।"

ସାତଦିନ ପରେ ମା' ଓ ପୁଅ ମହାତ୍ମାଗାନ୍ଧିଙ୍କୁ ଦେଖା କରିବାକୁ ଆସିଲେ । ମହାତ୍ମାଗାନ୍ଧି ସେ ପିଲାକୁ ଲୁଣ ଖାଇବାକୁ ମନା କଲେ । ପିଲାଟି ସଙ୍ଗେ ସଙ୍ଗେ ମାନିଗଲା । ମା' ଆଶ୍ଚର୍ଯ୍ୟ ହେଲେ । ସେ ଗାନ୍ଧିଜୀଙ୍କୁ ପଚାରିଲେ ଯେ ଏକ ସପ୍ତାହ ପୂର୍ବରୁ ଏହି ପରାମର୍ଶ ସେ କାହିଁକି ଦେଲେ ନାହିଁ ।

ଗାନ୍ଧିଜୀ କହିଲେ - "ଗତ ସପ୍ତାହରେ ଯେତେବେଳେ ତୁମେ ମୋ' ପାଖକୁ ଆସିଥିଲ, ସେତେବେଳେ ମୁଁ ମୋ' ଖାଦ୍ୟରେ ଲୁଣ ପକାଉଥିଲି । ମୁଁ ଭାବିଲି, ଅନ୍ୟ କାହାକୁ ଲୁଣ ଖାଇବାକୁ ମନା କରିବା ପୂର୍ବରୁ ମୋତେ ନିଜେ ଲୁଣ ଛାଡ଼ିବାକୁ ପଡ଼ିବ । ଗତ ସପ୍ତାହରେ ମୁଁ ଲୁଣ ଖାଇ ନାହିଁ । ତେଣୁ ଏହି ପରାମର୍ଶ ଦେବାର ମୁଁ ଅଧିକାରୀ ହୋଇଛି ।

**ପରାମର୍ଶ - ୭**

**ପରସ୍ପର ବୁଝାବଣା ରଖୁଥିବା ବ୍ୟକ୍ତି ସବୁବେଳେ ଅନ୍ୟର ସେବା କରିବାକୁ ସୁଯୋଗ ଖୋଜୁଥାଏ**

ମୁମ୍ବାଇ, ଚେନାଇ, କୋଲକତା, ଲଣ୍ଡନ, ନ୍ୟୁୟୋର୍କ ପରି ବଡ଼ ବଡ଼ ସହରମାନଙ୍କରେ ଦେଖିବାକୁ ମିଳେ ଯେ, ଲୋକେ ଅନ୍ୟର ଆବଶ୍ୟକତା ପ୍ରତି ଆଗ୍ରହ ପ୍ରକାଶ କରନ୍ତି ନାହିଁ । ପ୍ରେମର ବିରୋଧି ଶବ୍ଦ କ'ଣ ଜାଣନ୍ତି ? ପ୍ରେମର ବିରୋଧୀ ଘୃଣା ନୁହେଁ,

ବରଂ ଆଖପାଖରେ ଥିବା ଲୋକମାନଙ୍କର ଦରକାର ବେଳେ ଆଗ୍ରହ ପ୍ରକାଶ ନ କରିବା । ଯଦି ଆପଣ ପରସ୍ପର ଭାବନାର ବିକାଶ କରିବାକୁ ଚାହୁଁଛନ୍ତି ତେବେ ଆପଣଙ୍କୁ ସେବା ଭାବର ବିକାଶ କରିବା ଦରକାର ।

ଗୋଟିଏ ପିଲା ମା'କୁ ପଚାରିଲା - "ମା' ଆମେ ଏଠାକୁ କାହିଁକି ଆସିଛେ ?"

ମା' ଜବାବ ଦେଲେ - "ଆମେ ଅନ୍ୟର ସେବା କରିବାକୁ ଆସିଛେ ।"

ପିଲାଟି ସନ୍ତୁଷ୍ଟ ହେଲା ନାହିଁ । ସେ ପୁଣି ପଚାରିଲା, "ତେବେ ଅନ୍ୟ ଲୋକମାନେ କାହିଁକି ଆସିଛନ୍ତି ?"

ଯିଏ ବୁଝାବଣା ଭାବନା ବଢ଼ାଇବା ଚାହାଁନ୍ତି, ସେମାନେ ଅନ୍ୟମାନଙ୍କର ଏଠାକୁ ଆସିବାର କାରଣ ପଚାରନ୍ତି ନାହିଁ, ଆମକୁ ଭାବିବାକୁ ହେବ ଯେ ଆମେ ଅନ୍ୟକୁ ସାହାଯ୍ୟ କରିବାକୁ ଆସିଛେ । ମୁଁ ଜଣେ ଯୁବକ ବିଷୟରେ ପଢ଼ିଥିଲି, ଥରେ ସେ ରେଳଗାଡ଼ିରେ ଯାତ୍ରା କରୁଥିଲେ । ସେହି ଡ଼ବାର ଜଣେ ବୁଢ଼ା ଲୋକ ଥିଲେ । ସେ ଭୟାର୍ତ୍ତ ଓ ବ୍ୟାକୁଳ ଅବସ୍ଥାରେ ଥିଲେ ।

ଯୁବକ ଜଣକ ତାଙ୍କ ପାଖରେ ଯାଇ ବସିଲେ ଓ ସେ ତାଙ୍କୁ କିଛି ସାହାଯ୍ୟ କରିପାରିବେ କି ବୋଲି ପଚାରିଲେ । ବୃଦ୍ଧାବ୍ୟକ୍ତି ଜଣକ କହିଲେ କି ସକାଳୁ ତାଙ୍କୁ ଖବର ମିଳିଲା ଯେ ତାଙ୍କର ଏକମାତ୍ର ପୁତ୍ର ଅତି ବେମାର ପଡ଼ିଯାଇଛି ଓ ଡ଼ାକ୍ତରଖାନାରେ ଭର୍ତ୍ତି ହୋଇଛି । ଯେଉଁ ସହରରେ ତାଙ୍କ ପୁଅ ରହେ ସେଠାରେ ଗାଡ଼ି ଅଧାରାତିରେ ପହଞ୍ଚିବ । ସେ କହିଲେ "ମୋର ବଡ଼ ଚିନ୍ତା ହେଲା ଏତେ ରାତିରେ ମୁଁ ସେ ଡ଼ାକ୍ତରଖାନା କିପରି ଖୋଜିବି ?" ଯୁବକ ଜଣକ କହିଲେ, "ଆପଣ ଆଦୌ ଚିନ୍ତା କରନ୍ତୁ ନାହିଁ । ମୁଁ ସେ ସହରରେ ଅନେକ ଦିନ ରହିଛି ଓ ସେ ଡ଼ାକ୍ତରଖାନାଟି କେଉଁଠି ମୁଁ ଭଲଭାବରେ ଜାଣିଛି । ମୁଁ ସେ ଷ୍ଟେସନରେ ଓହ୍ଲାଇ ଆପଣଙ୍କୁ ଡ଼ାକ୍ତରଖାନା ନେଇଯିବି ଓ ଫେରି ଅନ୍ୟ ଗାଡ଼ି ଧରି ମୋ ଗନ୍ତବ୍ୟସ୍ଥଳକୁ ଯିବି ।" ସେହି ଯୁବକର ଅନ୍ୟକୁ ବୁଝିବାର ଶକ୍ତି ଥିଲା ।

ଗୋଟିଏ ଦମ୍ପତି ପିଲାଟିଏ ପୋଷ୍ୟପୁତ୍ର ଭାବରେ ଗ୍ରହଣ କରିବାକୁ ଚାହୁଁଥିଲେ । ସେମାନେ ଗୋଟିଏ ଅନାଥାଳୟ ଗଲେ । ସେଠାରେ ଗୋଟିଏ ପିଲା ଭାରି ଭଲ ଲାଗିଲା । ସେମାନେ

ତାକୁ କହିଲେ, "ତୁ ଆମ ସଙ୍ଗରେ ଗଲେ ଆମେ ତୋତେ ଅନେକ ଚିତ୍ର ଥିବା ବହି, ବହୁତ ଖେଳନା ଓ ମିଠାଇ ଦେବୁ ।" ପିଲାଟି କୌଣସି ପ୍ରକାର ଆଗ୍ରହ ପ୍ରକାଶ କଲା ନାହିଁ ।

ସେମାନେ ପିଲାଟିକୁ ପଚାରିଲେ - "ତୋର କ'ଣ ଦରକାର ?" ପିଲାଟି କହିଲା - "ମୋତେ ଖେଳନା, ମିଠାଇ, ଚିତ୍ରବହି କିମ୍ବା ଟି.ଭି. ଦରକାର ନାହିଁ । ମୋତେ ଏପରି ବ୍ୟକ୍ତିର ଆବଶ୍ୟକତା ଅଛି ଯେ ମୋତେ ଠିକ୍ ଭାବରେ ବୁଝିବ ।" ଏହା କ'ଣ ପ୍ରତ୍ୟେକ ମାନବୀୟ ହୃଦୟର କ୍ଷୁଧା ନୁହେଁ ? ପ୍ରତ୍ୟେକ ବ୍ୟକ୍ତି ଚାହାନ୍ତି କି ତାଙ୍କୁ କିଏ ଠିକ୍ ଭାବରେ ବୁଝୁ କିନ୍ତୁ ଏଠାରେ ତ ପରସ୍ପର ବୁଝାବଣାର ବିରୋଧାଭାସ ପ୍ରକଟିତ ହୁଏ । ଯେ ପର୍ଯ୍ୟନ୍ତ ଆପଣ ନିଜକୁ ଭୁଲି ଅନ୍ୟକୁ ବୁଝିବାକୁ ଚେଷ୍ଟା ନ କରିଛନ୍ତି, ସେ ପର୍ଯ୍ୟନ୍ତ ଆପଣଙ୍କୁ କେହି ବି ବୁଝିବେ ନାହିଁ । ଆପଣ ଅନ୍ୟକୁ ବୁଝିଲେ ସେହି ସଦ୍‌ଭାବନା ଆପଣଙ୍କ ପାଖକୁ ଫେରି ଆସିବ ।

ଆଜି ପୁରା ସଂସାର ଗୋଟିଏ ସଙ୍କଟଜନକ ସ୍ଥିତିରେ ଗତି କରୁଛି । ଦୁନିଆଯାକର ଦେଶମାନଙ୍କରେ ଅସ୍ଥିରତା

ବଢ଼ିଚାଲିଛି । ବିଭିନ୍ନ ଦେଶ ଜଙ୍ଗଲର ଅନ୍ଧାରରେ ପଥଭ୍ରଷ୍ଟ ହୋଇଯାଉଛି । କ୍ଷମତାର ଲାଳସା, ଯଶର କାମନା ଓ ଧନର ପ୍ରଲୋଭନ ବଢ଼ି ବଢ଼ି ଚାଲିଛି ।

ଆଜି ମାନବତା ଗୋଟିଏ ନଦୀ ଧାରରେ ଠିଆ ହୋଇ ଆତ୍ମହତ୍ୟା କରିବାକୁ ପ୍ରସ୍ତୁତ । ସେ ଏପରି ଏକ ଅନାଥ ଶିଶୁପରି ଯିଏ ରାତିର ଅନ୍ଧାରରେ ଆଲୋକ ପାଇଁ ବ୍ୟାକୁଳ ।

ବ୍ୟାକୁଳ ମାନବତା ପାଇଁ ସମ୍ବେଦନାର ଆଲୋକ ଆବଶ୍ୟକ । ଆଜି ଏପରି ସ୍ଥିତିରେ ରାଷ୍ଟ୍ର ଓ ଲୋକଙ୍କୁ ପରସ୍ପରକୁ ବୁଝିବାକୁ ଶିଖିବାକୁ ପଡ଼ିବ, ନହେଲେ ତାର ବିନାଶ ହୋଇଯିବ । ଏହାବ୍ୟତୀତ ଅନ୍ୟ ବାଟ ନାହିଁ ।

# କ୍ଷମାର ଯାଦୁ

ଯେଉଁ ବ୍ୟକ୍ତି ନିରନ୍ତର କ୍ରୋଧ ବା ଆକ୍ରୋଶ ମନୋସ୍ଥିତିରେ ରହିଥାଏ, ସେ ଅଜାଣତରେ ନିଜର କ୍ଷତି କରିଥାଏ । ଅନ୍ୟପକ୍ଷରେ କ୍ଷମାକରିବା ବ୍ୟକ୍ତି ସୌମ୍ୟଶାନ୍ତିର ଅବସ୍ଥା ପ୍ରାପ୍ତ ହୋଇଥାଏ । କ୍ଷମା ସ୍ୱୟଂ ଗୋଟିଏ ବଡ଼ ପୁରସ୍କାର । ଯାହାକୁ କ୍ଷମା କରାଯାଏ, ତାର ସେତିକି ଲାଭ ହୁଏ ନାହିଁ ଯେତିକି କ୍ଷମା କରିବା ଲୋକର ହୋଇଥାଏ ।

କ୍ଷମା ଯାଦୁର କାମ କରିଥାଏ । କ୍ଷମାଦ୍ୱାରା ଆମର ଅନେକ ସମସ୍ୟା ଚମତ୍କାର ଭାବରେ ସମାଧାନ ହୋଇଯାଏ ।

## ପରିଚ୍ଛେଦ - ଏକ
## କ୍ରୋଧର ଚିକିତ୍ସା କ୍ରୋଧ ନୁହେଁ

ଆମେରିକା କଂଗ୍ରେସର ଜଣେ ସଦସ୍ୟ ଜେ.ପି. ବେଞ୍ଜାମିନ୍ ଗୋଟିଏ ଆଲୋଚନାରେ ଭାଗନେଇ ଆଉ ଜଣେ ସଦସ୍ୟ ସିଓ୍ୱାର୍ଡ଼ଙ୍କ ଉପରେ ବ୍ୟକ୍ତିଗତ ଆକ୍ରମଣ କଲେ । ଏହିପରି ଅନେକ ସମୟ ଧରି ସମାଲୋଚନା କରିବା ପରେ କ୍ରୋଧ ଓ ଘୃଣାରେ ଜର୍ଜରିତ ବେଞ୍ଜାମିନ୍ ନିଜ ସ୍ଥାନରେ ବସିପଡ଼ିଲେ ଓ ପ୍ରତି ଆକ୍ରମଣକୁ ଅପେକ୍ଷାକଲେ ।

ସେଠାରେ ଉପସ୍ଥିତ ଥିବା ଲୋକମାନେ ଆଶ୍ଚର୍ଯ୍ୟ ହେଲେ, ଯେତେବେଳେ ସେମାନେ ଦେଖିଲେ ଯେ, ସିଓ୍ୱାର୍ଡ଼ ନିଜ ବିରୋଧୀଙ୍କ ପାଖକୁ ଯାଇ ମଧୁରକଣ୍ଠରେ କହିଲେ - "ବେଞ୍ଜାମିନ

ମୋତେ ଗୋଟିଏ ସିଗାରେଟ ଦିଅନ୍ତୁ । ଯେତେବେଳେ ଆପଣଙ୍କର ଭାଷଣ ଛପାହୋଇଯିବ, ମୋତେ ତାର ଦୁଇଟି କପି ପଠାଇବେ ।" ତାପରେ ସିଓ୍ୱାର୍ଡ଼ ନିଜ ପ୍ରତିଦ୍ୱନ୍ଦୀଙ୍କଠାରୁ ପାଇଥିବା ସିଗାରେଟଟି ଟାଣୁ ଟାଣୁ ନିଜ ମିତ୍ରମାନଙ୍କ ସହିତ ଥଟ୍ଟାମଜ୍ଜାରେ ମାତିଗଲେ ।

କ୍ରୋଧ, କ୍ରୋଧଦ୍ୱାରା ଶାନ୍ତ ହୁଏନାହିଁ; ବରଂ କ୍ଷମାଦ୍ୱାରା ହୋଇଥାଏ । ମୋ'ମତରେ କ୍ରୋଧକୁ ଦୂର କରିବାକୁ ସବୁଠାରୁ ଶକ୍ତିଶାଳୀ ଅସ୍ତ୍ର ହେଉଛି କ୍ଷମା । ଯେଉଁମାନେ କୌଣସି କାରଣରୁ ଆମପ୍ରତି ମୈତ୍ରୀପୂର୍ଣ୍ଣ ନୁହନ୍ତି, ସେମାନଙ୍କ ପ୍ରତି ଆମେ କ୍ଷମାଶୀଳ ଓ ବନ୍ଧୁତ୍ୱ ମନୋଭାବ ରଖିବା ଉଚିତ ।

ବନ୍ଧୁତ୍ୱର ଭାବନା ହେଉଛି ସବୁଠାରୁ ବଡ଼କଥା । କାରଣ ବନ୍ଧୁତ୍ୱ ହେଉଛି ଦୁଇପକ୍ଷୀୟ ପ୍ରକ୍ରିୟା ଯେଉଁଥିରେ କୌଣସି ବ୍ୟକ୍ତିକୁ ଜବରଦସ୍ତି କରାଯାଇ ପାରିବନାହିଁ । ମୁଁ ଜଣକୁ କ୍ଷମା କରିଦେଇପାରେ କିନ୍ତୁ ତାଙ୍କୁ ମୁଁ ବାଧ କରିପାରିବି ନାହିଁ କି ସେ ମଧ ମୋତେ କ୍ଷମା କରନ୍ତୁ । କ୍ଷମାଶୀଳତାର ବ୍ୟାଖ୍ୟା ଏହିପ୍ରକାରେ କରାଯାଇଛି - "କାହାପ୍ରତି ଥିବା ଅସନ୍ତୋଷକୁ ଦୂର କରିବା ହେଉଛି କ୍ଷମା କରିବାର ପ୍ରକ୍ରିୟା ।" ଅସନ୍ତୋଷକୁ ଜାବୁଡ଼ି

ଧରିବାର ଅର୍ଥ ହେଉଛି ନିଜର କ୍ଷତି କରିବା ତଥା ଆଧ୍ୟାତ୍ମିକ ମୃତ୍ୟୁର ମାର୍ଗରେ ଚାଲିବା । ଅସନ୍ତୋଷକୁ ଦୂର କରିବାର ଅର୍ଥ ହେଉଛି, ମୁକ୍ତି ଓ ସନ୍ତୋଷର ପଥରେ ଚାଲିବା । ଯେଉଁ ବ୍ୟକ୍ତି କ୍ରୋଧ ଓ ଅସନ୍ତୋଷକୁ ଜାବୁଡ଼ି ଧରି ରହିଥାଏ; ସେ ଅଜାଣତରେ ନିଜର କ୍ଷତି କରିଥାଏ । କ୍ଷମା କରିଦେବା ବ୍ୟକ୍ତି ଶାନ୍ତି ଓ ପରିପୂର୍ଣ୍ଣ ଜୀବନ ଆରମ୍ଭ କରିଥାଏ । କ୍ଷମା କରିଥିବା ବ୍ୟକ୍ତି କ୍ଷମା ପାଇଥିବା ବ୍ୟକ୍ତିଠାରୁ ଅଧିକ ଲାଭବାନ ହୋଇଥାଏ ।

କ୍ଷମାଶୀଳତା ଯାଦୁ ପରି କାର୍ଯ୍ୟ କରିଥାଏ ଓ ଆମର ଅନେକ ସମସ୍ୟାର ସମାଧାନ କରିଦେଇଥାଏ । ମଣିଷ ମଧ୍ୟରେ ଯେତିକି କ୍ଷମାଶୀଳ ହେବ, ସେ ସେତିକି ମହାନ ହୋଇଥାଏ । ଇତିହାସର ସମସ୍ତ ମହାନ ସ୍ତ୍ରୀ ଓ ପୁରୁଷମାନେ କ୍ଷମାଶୀଳ ଥିଲେ । କ୍ଷମାଶୀଳତା କେବଳ ମହାନ୍ ଲୋକମାନଙ୍କର ଏକଚାଟିଆ ଗୁଣ ନୁହେଁ । ସାଧାରଣ ବ୍ୟକ୍ତି ତଥା ବିନୀତ ସ୍ତ୍ରୀ-ପୁରୁଷମାନେ ମଧ୍ୟ କ୍ଷମା ଆଚରଣ କରିଥାଆନ୍ତି ।

ଗୋଟିଏ ଘରେ ଜଣେ ବ୍ୟକ୍ତି ଓ ତାଙ୍କର ଦଶବର୍ଷର ଗୋଟିଏ ଝିଅ ରହୁଥିଲେ । ଦିନେ କେତେକ ଅପରାଧୀ ସେ ଘର ଉପରେ ଆକ୍ରମଣ କଲେ । ମୁକାବିଲା କରି ପିତାଙ୍କର

ମୃତ୍ୟୁ ହୋଇଗଲା । ସେମାନେ ଝିଅଟିର ଜୀବନ ନେଲେ ନାହିଁ ସିନା କିନ୍ତୁ ଯିବା ସମୟରେ ତାକୁ ଅନ୍ଧ କରିଦେଇଗଲେ । ସେହି ଝିଅଟିର ନାମ ଥିଲା, ମୌଲିନିଆ । ଦଶବର୍ଷ ବିତିଗଲା । ଝିଅଟି ରାସ୍ତାକଡ଼ରେ ବସିଥାଏ; କିଏ ଆସିବାର ପଦଶବ୍ଦ ସେ ଶୁଣିବାକୁ ପାଇଲା । ସେ ଡ଼ରିଗଲା ଓ ପାଟିକରି କହିଲା, "କିଏ ! ଦେଖିକରି ଚାଲ, ମୁଁ ଅନ୍ଧ ।"

ସେମାନଙ୍କ ମଧ୍ୟରୁ ଜଣେ କହିଲା, "ମୁଁ ଜାଣିଛି । କାରଣ ମୁଁ ତୋ ପିତାଙ୍କୁ ହତ୍ୟା କରିଥିଲି ଓ ତୋତେ ଅନ୍ଧ କରିଦେଇଥିଲି । ଏବେ ମୁଁ ଜଣେ ବ୍ୟକ୍ତିଙ୍କୁ ଲୁଟିବାକୁ ଯାଉଥିବା ସମୟରେ ସେ ମୋତେ ଗୁଳି ମାରିଦେଇଛି । ମୋର ମରିବା ସମୟ ହୋଇଗଲାଣି । ତୋତେ ମୋର ପ୍ରାର୍ଥନା, ଯଦି ପାରୁ ମୋତେ କ୍ଷମା କରିଦେବୁ ।"

ମୌଲିନିଆ କ୍ରୋଧରେ ଥରିବାକୁ ଲାଗିଲା । କିନ୍ତୁ ନିଜ ଉପରେ କାବୁ ରଖି ସେ ଲୋକଟିକୁ କ୍ଷମା କରିଦେଲା ଏବଂ ତାକୁ ପଶ୍ଚାତାପ କରିବାକୁ ପ୍ରେରଣା ଦେଲା । ଲୋକଟିର ମୃତ୍ୟୁ ହୋଇଗଲା ପରେ ମୌଲିନିଆ ଅଣ୍ଡାଳି ଅଣ୍ଡାଳି ଲୋକଟିର ଆଖି ଦୁଇଟିକୁ ନିଜ ହାତରେ ଏପରି ଭାବରେ ବନ୍ଦ କଲା ଯେପରି ସେ ତାର ଜନ୍ମିତ କନ୍ୟା ।

ଷୋଡ଼ଶ ଲୁଇଙ୍କର ପୁତ୍ର ଫ୍ରାନ୍ସର ରାଜକୁମାର ଜଣେ କ୍ରୁର ଜେଲରର ପାଖରେ ବନ୍ଦୀ ଥିଲେ । ସେ ତାଙ୍କପ୍ରତି ଅତ୍ୟନ୍ତ ଖରାପ ବ୍ୟବହାର କରୁଥିଲା କାରଣ ଥିଲାକି ସେ ଜଣେ ରାଜାର ପୁତ୍ର ।

ଦିନେ ସେ ନିଜର ରାଜକୁମାରକୁ ପଚାରିଲା, 'ଯଦି ତୁମକୁ ଫ୍ରାନ୍ସର ରାଜ ସିଂହାସନରେ ବସାଇ ଦିଆଯାଏ, ତେବେ ତୁମେ ମୋର କ'ଣ କରିବ ? ମୋତେ କ'ଣ ଫାଶୀରେ ଚଢ଼ାଇଦେବ ? ସେହି ଅନାଥ ରାଜକୁମାର କେବଳ ଏତିକି କହିଲେ, 'ମୁଁ ତୁମକୁ କ୍ଷମା କରିଦେବି ।'

କ୍ଷମା ଭାବନା ବିନା ଜୀବନ କିପରି ହେବ, ତାର କଳ୍ପନା କରିବା କଷ୍ଟକର । ଏହା ସତ୍ୟ ଯେଉଁ ବ୍ୟକ୍ତି ନିଜ ଶତ୍ରୁକୁ କ୍ଷମା କରିନାହିଁ, ସେ ଏ ପର୍ଯ୍ୟନ୍ତ ଜୀବନର ସବୁଠାରୁ ଆନନ୍ଦର ସ୍ୱାଦ ଚାଖିନାହିଁ । ସମୟ ବିତିଯିବା ପୂର୍ବରୁ ଆମେ ପରସ୍ପରକୁ କ୍ଷମା କରିଦେବା ଉଚିତ କାରଣ ଏପରି ସମୟ ଯେତେବେଳେ କ୍ଷମା କରିବାର ସୁଯୋଗ ମିଳେନା ।

ଶୁଣାଯାଏ ଉନବିଂଶ ଶତାବ୍ଦୀର ଦୁଇ ମହାନ୍ ଲେଖକ ଥାକରେ ଓ ଡ଼ିକେନ୍ସ ପରସ୍ପରର ବିରୋଧୀ ହୋଇଯାଇଥିଲେ ଓ

ସେମାନଙ୍କର ବନ୍ଧୁତ୍ୱ କଟିଗଲା । ୧୮୮୩ ମସିହା କ୍ରିସ୍‌ମସର ଠିକ୍ ପୂର୍ବରୁ ସେମାନଙ୍କର ଲଣ୍ଡନରେ ଦେଖା ହୋଇଗଲା । କିନ୍ତୁ ଜାଣି ଜାଣି ଦୁହେଁ ପରସ୍ପରକୁ ନ ଦେଖିଲା ପରି ହେଲେ । ଅଚାନକ ଥାକରେ ପଛକୁ ବୁଲିପଡ଼ି ଡ଼ିକେନ୍‌ସ୍‌ଙ୍କ ହାତ ଧରିପକାଇ କହିଲେ, "ମୁଁ ଆମ ଦୁହିଁଙ୍କ ମଧ୍ୟରେ ଥିବା ଏହି ନୀରବତାକୁ ଆଉ ସହ୍ୟ କରିପାରୁ ନାହିଁ ।"

ଡ଼ିକେନ୍‌ସ୍‌ଙ୍କ ହୃଦୟ ତରଳିଗଲା । ହସହସ ମୁହଁରେ ପରସ୍ପରକୁ ବିଦାୟ ଦେଇଥିଲେ, କାରଣ ପୁରୁଣା ଈର୍ଷା ସମାପ୍ତ ହୋଇଯାଇଥିଲା ।

ଏହାର କିଛିଦିନ ପରେ ଥାକେରଙ୍କର ମୃତ୍ୟୁ ହୋଇଯାଇଥିଲା । ଭାବନ୍ତୁ ତ ଦେଖି ଡ଼ିକେନ୍‌ସ୍‌ଙ୍କୁ ଏହା କେତେ ସନ୍ତୋଷ ଦେଇଥିବ ଯେ ମୃତ୍ୟୁର ଠିକ୍ ପୂର୍ବରୁ ସେମାନେ ଉତ୍ସାହର ସହିତ ହାତ ମିଳାଇଥିଲେ । କ୍ଷମା ମାଗିବା କିମ୍ବା ଦେବାରେ ଆମେ ଡ଼େରି କରିବା ଉଚିତ ନୁହେଁ । କିଏ ଜାଣେ ଏଥିପାଇଁ ଆମକୁ ଆଉ ସୁଯୋଗ ନ ମିଳିପାରେ ।

## ପରିଚ୍ଛେଦ - ଦୁଇ
# ଯାହା ଈଶ୍ୱର ଭୁଲିଯାଇଛନ୍ତି, ତାହା ତୁମେ ମଧ୍ୟ ଭୁଲିଯାଅ

ଆମର ଯେତେବେଳେ ଆଧ୍ୟାତ୍ମିକ ଉନ୍ନତି ହୁଏ, ସେତେବେଳେ କ୍ଷମାଶୀଳତା ଆମର ସ୍ୱଭାବରେ ପରିଣତ ହୋଇଯାଏ । କିଏ କ୍ଷମା ମାଗିବା ପୂର୍ବରୁ ଆମେ ତାଙ୍କ ପ୍ରତି ସମ୍ବେଦନଶୀଳ ହୋଇପାରୁ । ଏହା କରିବା ଦ୍ୱାରା ଆମେ ଶାନ୍ତି ପାଇଥାଉ ।

କ୍ଷମାରେ ଅନ୍ୟକୁ ପରିବର୍ତ୍ତନ କରିବାର ଶକ୍ତି ଅଛି । କେତେକ ଲୋକ ଭୁଲ ରାସ୍ତାରେ ଚାଲିଯାଇଥିବା ଗୋଟିଏ ଝିଅକୁ ଆଣି ସାଧୁ ବାସୱାନୀଙ୍କ ପାଖରେ ପହଞ୍ଚିଲେ । ଝିଅଟିର ଆଖିରେ

ପଶ୍ଚାତ୍ତାପର ଅଶ୍ରୁ ଥିଲା । ସାଧୁ ବାସୱାନୀ ତାକୁ ନିଜ ପାଖକୁ ଡ଼ାକିଲେ ଝିଅଟି ତାଙ୍କ ପାଖକୁ ଆସିଲା । ତାର ଲୁହ ସାଧୁ ବାସୱାନୀଙ୍କ ପାଦ ଉପରେ ପଡ଼ିଲା । ସାଧୁ ବାସୱାନୀ ନିଜ ରୁମାଲ କାଢ଼ି ଝିଅଟିର ଲୁହ ପୋଛିଦେଲେ ଓ କହିଲେ – "ଝିଅ ! ଯେଉଁ କଥାକୁ ଈଶ୍ୱର ଭୁଲିଗଲେଣି, ତୁ ମଧ୍ୟ ତାକୁ ଭୁଲିଯା । ଏବେ ଯା, ଆଉ କେବେବି ପାପ କରିବୁ ନାହିଁ ।"

ସେ ଝିଅଟିର ଜୀବନ ସମ୍ପୂର୍ଣ୍ଣ ବଦଳିଗଲା । ଏହା କେବଳ କ୍ଷମାର ଯାଦୁଦ୍ୱାରା ସମ୍ଭବ ହେଲା ।

ସହରର କେତେକ ଧନୀ ଲୋକଙ୍କଠାରୁ କିଛି ପଇସା ପାଇ ଗୋଟିଏ ଖବର କାଗଜର ସମ୍ପାଦକ ସାଧୁ ବାସୱାନୀ ତଥା ତାଙ୍କର କାର୍ଯ୍ୟକଳାପ ବିଷୟରେ ଅନେକ ମିଛକଥା ଲେଖିଲେ । ସେହି ଖବରକାଗଜକୁ ଅନେକ ଘରେ ମାଗଣାରେ ବାଣ୍ଟି ଦିଆଗଲା ।

କିଛି ସମୟପରେ ସେହି ସମ୍ପାଦକଙ୍କ ପତ୍ନୀଙ୍କୁ ଟି.ବି. ହୋଇଗଲା । ସେ ତାଙ୍କର ସବୁଠାରୁ ଭଲ ଚିକିତ୍ସା କରିବାକୁ ଚାହୁଁଥିଲେ, କିନ୍ତୁ ତାଙ୍କ ପାଖରେ ଏତେ ପଇସା ନଥିଲା । ଯେତେବେଳେ ସାଧୁ ବାସୱାନୀଙ୍କୁ ଏହି ଖବର ମିଳିଲା, ସେ ନୋଟର ଗୋଟିଏ ବିଡ଼ା ସମ୍ପାଦକଙ୍କ ହାତରେ ଧରାଇ କହିଲେ

- "ଭାଇ ! ଏହା ତୁମର ପତ୍ନୀଙ୍କ ଚିକିତ୍ସା ପାଇଁ । ଯଦି ଆଉ ପଇସାର ଦରକାର ପଡ଼େ, ତେବେ ଦୟାକରି ମୋତେ କହିବ ।"

ସମ୍ପାଦକ ତରଳି ଗଲେ । ସେ ସାଧୁ ବାସୱାନୀଙ୍କର ପରମ ଭକ୍ତରେ ପରିଣତ ହୋଇଗଲେ ଓ ତାଙ୍କର ଅନ୍ତିମ ଦିନ ପର୍ଯ୍ୟନ୍ତ ବାସୱାନୀଙ୍କର ସତ୍‌ସଙ୍ଗକୁ ଆସୁଥିଲେ, କ୍ଷମାଶୀଳତାର ଯାଦୁ ଏହିପରି ।

ଭୁଲ କରିବା ମନୁଷ୍ୟର ସ୍ୱଭାବ ଓ କ୍ଷମା କରିବା ଦିବ୍ୟତାର ଲକ୍ଷଣ । ଆପଣ ଯେତିକି କ୍ଷମା କରିବା ଶିଖୁଛନ୍ତି, ସେତିକି ଈଶ୍ୱରସ୍ୱରୂପ ହୋଇଯାଆନ୍ତି । ଈଶ୍ୱର ହେଉଛନ୍ତି ମୁକ୍ତିର ଅନ୍ୟନାମ । କ୍ଷମାର 'ମ' ହେଉଛି ମୁକ୍ତି । କ୍ଷମା ଆମକୁ ସେହି ଦୁଃଖରୁ ମୁକ୍ତ କରେ ଯାହା ଆମର ସ୍ମରଣଶକ୍ତି ଥିଲା ପର୍ଯ୍ୟନ୍ତ କଷ୍ଟ ଦେଉଥାଏ ।

ଆମର ଅନ୍ତର ଭିତରେ ପ୍ରେମ ଓ ଘୃଣା ମଧ୍ୟରେ ସଂଘର୍ଷ ଚାଲୁଥାଏ । ପ୍ରେମ କହୁଥାଏ - କ୍ଷମା କରିଦିଅ । ଘୃଣା ଇଟାର ଜବାବ ପଥରରେ ଦେବା ଚାହେଁ, ଯିଏ ମୋତେ ଦୁଃଖ ଦେଇଛି, ମୋତେ ଧୋକା ଦେଇଛି, ମୋ' ସହିତ ବିଶ୍ୱାସଘାତ କରିଛି, ମୋତେ ଶୋଷଣ କରିଛି, ମୋର ବଦନାମ କରିଛି । ପ୍ରେମ କହୁଛି, କ୍ଷମା କରିଦେ, ଘୃଣା କହୁଛି, ପ୍ରତିଶୋଧ ନେ । ଆଖି

ବଦଳରେ ଆଖି ତାଡ଼ । ଇଟାର ଜବାବ ପଥରରେ ଦିଅ । ଏହି ସଂଘର୍ଷରେ ଯଦି ପ୍ରେମ ଜିତିଯାଏ ତେବେ ଭୁଲ କରିଥିବା ବ୍ୟକ୍ତିଙ୍କୁ କ୍ଷମା କରିଦିଏ । ଯଦି ଘୃଣା ବିଜୟୀ ହୁଏ ତେବେ ମୋ' ପ୍ରତି ହୋଇଥିବା ଅନ୍ୟାୟର ଭାବନା ମୋତେ ଭିତରେ ଭିତରେ ଜଳାଉଥାଏ ।

ବହୁବର୍ଷ ପୂର୍ବେ ଜଣେ ଲୋକ ସହିତ ମୋର ଦେଖାହୋଇଥିଲା । ତାଙ୍କର ଚେହେରା କୋଇଲା ପରି କଳା ଥିଲା । ସେ କହିଲେ - 'ମୋ' ଭିତରେ ନିଆଁ ଜଳୁଛି ଓ ତାହା ସେ ପର୍ଯ୍ୟନ୍ତ ଜଳୁଥିବ ଯେ ପର୍ଯ୍ୟନ୍ତ ମୁଁ ମୋ' ପିତାଙ୍କର ହତ୍ୟାକାରୀକୁ ହତ୍ୟା ନ କରିଛି ।' ସତରେ ଘୃଣା ଏପରି ଏକ ନିଆଁ ଯାହା ନିଜର ଶାନ୍ତି ଓ ଖୁସିକୁ ଜଳାଇ ଦିଏ ।

ମହାତ୍ମାଗାନ୍ଧିଙ୍କ କଥା ଦେଖିବା, ୧୯୦୮ ମସିହାରେ ଦକ୍ଷିଣ ଆଫ୍ରିକାରେ ଜଣେ ଉଗ୍ରବାଦୀ ତାଙ୍କୁ ହତ୍ୟା କରିବାକୁ ଉଦ୍ୟମ କରିଥିଲା । ମହାତ୍ମାଗାନ୍ଧି ନିଜ ବନ୍ଧୁମାନଙ୍କୁ କହିଲେ, "ଏ ବ୍ୟକ୍ତିକୁ ମାଲୁମ ନାହିଁ ଯେ ସେ କ'ଣ କରିବାକୁ ଯାଉଥିଲା । ମୁଁ ପ୍ରେମଦ୍ୱାରା ତାକୁ ଜୟ କରିବି ।" ବର୍ଷକ ପରେ ସେହି ବ୍ୟକ୍ତି ଚିଠି ଲେଖି ଗାନ୍ଧିଜୀଙ୍କୁ କ୍ଷମା ମାଗିଥିଲା ଓ ତାଙ୍କର ପ୍ରଶଂସା କରିଥିଲା । ଏହାହିଁ ହେଉଛି କ୍ଷମାର ଯାଦୁ ।

ପୋପ ଜନ୍ ପଲଙ୍କ ଜୀବନରେ ମଧ୍ୟ ଏହିପରି ଘଟଣା ଘଟିଥିଲା । ୧୯୮୪ ମସିହାରେ ମହମ୍ମଦ ଅଲ୍ଲୀ ନାମକ ବ୍ୟକ୍ତି ତାଙ୍କୁ ହତ୍ୟା କରିବାକୁ ଉଦ୍ୟମ କରିଥିଲା । ପୋପ ରୋମର ରାବିବିଆ ଜେଲରେ ସେ ବ୍ୟକ୍ତିଙ୍କୁ ଦେଖା କରିବାକୁ ଗଲେ । ଯେଉଁ ବ୍ୟକ୍ତି ତାଙ୍କୁ ହତ୍ୟା କରିବାକୁ ଚେଷ୍ଟା କରିଥିଲା, ପୋପ ତାର ହାତକୁ ନିଜ ହାତରେ ଧରି ପକାଇଲେ ଓ ତାକୁ କ୍ଷମା କରିଦେଲେ ।

ସାଧୁ ବାସୱାନୀ, ମହାତ୍ମାଗାନ୍ଧୀ ଓ ପୋପ ଏମାନେ ତ ସମସ୍ତେ କ୍ଷମାର ଆଦର୍ଶ ପ୍ରତି ସମର୍ପିତ ମହାନ୍ ବ୍ୟକ୍ତି ଥିଲେ । ମୁଁ ଏବେ ଆପଣମାନଙ୍କୁ ଜଣେ ସାଧାରଣ ମଣିଷ ଜୀବନର ଏକ ଘଟଣା କହୁଛି । ଦିନେ ସେ ନିଜେ ବଗିଚାରେ ଗୋଟିଏ ଚୋର ବାଳକକୁ ଦେଖିଲେ । ବ୍ୟକ୍ତିଜଣକ ଚୁପ୍‌ଚାପ୍ ସେ ବାଳକର ପଛପଟେ ଯାଇ ତାର କାନ୍ଧଉପରେ ହାତ ପକାଇ ପଚାରିଲା, "ବାବୁ, କହିଲ ବଗିଚାର କେଉଁ ଫୁଲଟି ସବୁଠାରୁ ସୁନ୍ଦର ?"

ଯେତେବେଳେ ପିଲାଟି ଦେଖିଲା ଯେ ରକ୍ଷାପାଇବା କଷ୍ଟକର, ସେତେବେଳେ ସେ ଚାରିଆଡ଼କୁ ଦେଖି କହିଲା, "ସେହି 'ଗୋଲାପ ଫୁଲଟି ସବୁଠାରୁ ସୁନ୍ଦର ।' ସେ ବ୍ୟକ୍ତି ସେହି ଗୋଲାପ ଫୁଲଟି ତୋଳି ପିଲାଟି ହାତରେ ରଖିଦେଲା । ଆଶ୍ଚର୍ଯ୍ୟ

ହୋଇଯାଇ ପିଲାଟି କହିଲା, "କ'ଣ ଆପଣ ମୋତେ ଦଣ୍ଡ ଦେବେନାହିଁ ?" ଲୋକଟି କହିଲା, 'ନାହିଁ, ମୁଁ ତୋତେ ଦଣ୍ଡ ଦେବିନାହିଁ । କିନ୍ତୁ ମୁଁ ବିଶ୍ୱାସ କରୁଛି ଯେ ତୁ ପୁଣି କେବେ ମୋ ବଗିଚର ଫୁଲ ଚୋରାଇବୁ ନାହିଁ । ଠିକ୍ ଅଛି ?'

ପିଲାଟି ଦୃଢ଼ତା ସହିତ ଜବାବ ଦେଲା, 'ମହାଶୟ ! ଯେତେବେଳ ପର୍ଯ୍ୟନ୍ତ ମୁଁ ବଞ୍ଚିଛି, ଏପରି କେବେ କରିବି ନାହିଁ । କିନ୍ତୁ, ମୁଁ ଆପଣଙ୍କ ପାଇଁ କ'ଣ କିଛି କରିପାରିବି ? ମୁଁ ଜୀବନଯାକ ଆପଣଙ୍କର ସେବା କରିବାକୁ ଚାହୁଁଛି ।'

ଏହାହିଁ ହେଉଛି କ୍ଷମାଶୀଳତାର ଯାଦୁ । କ୍ଷମା ଓ ପ୍ରେମ ପିଲାଟିର କଠୋର ହୃଦୟକୁ ଜିତିନେଲା ଓ ସେ ସେହି ଧନୀ ବ୍ୟକ୍ତିର ଭକ୍ତ ହୋଇଗଲା ।

## ପରିଚ୍ଛେଦ - ତିନି

# ମହାପୁରୁଷମାନଙ୍କର ଜୀବନ ହିଁ ସାକ୍ଷୀ

ଆମେ ସବୁ କ୍ଷମା ନ କରିବାର ଅହଂ ଦ୍ୱାରା ପ୍ରଭାବିତ । ଏହି ଅହଂଟି ଇଟାର ଜବାବ ପଥରରେ ଦେବାକୁ ଚାହୁଁଛି । ଅହଂ କ୍ଷମା କରିବା ଚାହୁଁନାହିଁ । ଆମେ ଏହାର କବଳରୁ ଯେତିକି ବାହାରିବା ସେତିକି କ୍ଷମାଶୀଳ ହୋଇପାରିବା ।

ମାନବ ଇତିହାସର ସମସ୍ତ ମହାନ୍ ଲୋକଙ୍କ ଜୀବନରେ କ୍ଷମାଶୀଳତାର ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଛି । ଯୀଶୁଖ୍ରୀଷ୍ଟଙ୍କ ବିଷୟରେ ବିଚାର କରିବା । ସେ କାହାରି କ୍ଷତି କରିଥିଲେ ନା କାହାକୁ ଦୁଃଖ ଦେଇଥିଲେ । ତଥାପି ଲୋକେ ତାଙ୍କୁ ରାତିରେ ବନ୍ଦୀକରି ତାଙ୍କ ଉପରେ ମିଛ ମକଦ୍ଦମା ଚଳାଇ ଶୂଳୀ ଉପରେ ଚଢ଼ାଇ ମୃତ୍ୟୁଦଣ୍ଡ ଦେଇଦେଲେ । ଶୂଳୀ ଉପରେ ଚଢ଼ି ମଧ

ଯୀଶୁ ତାଙ୍କୁ ବନ୍ଦୀ କରିଥିବା ଲୋକଙ୍କ ପ୍ରତି ଦେଖି ପ୍ରାର୍ଥନାକଲେ, 'ହେ ପରମପିତା, ଏମାନଙ୍କୁ କ୍ଷମା କରିଦିଅ । କାରଣ ଏମାନେ ଜାଣିନାହାନ୍ତି କି ଏମାନେ କ'ଣ କରୁଛନ୍ତି ?'

ସନ୍ଥ ଏକନାଥ ଧୈର୍ଯ୍ୟର ପ୍ରତିମୂର୍ତ୍ତି ଥିଲେ । ସେ ସବୁବେଳେ ଶାନ୍ତ, ଅବିଚଳିତ ଓ ସ୍ଥିରଚିତ୍ତ ରହୁଥିଲେ । ସହରର କେତେକ ଲୋକ ତାଙ୍କୁ ଇର୍ଷା କରୁଥିଲେ । ସେମାନେ ଜଣେ ବ୍ୟକ୍ତିଙ୍କୁ ଟଙ୍କାର ଲୋଭ ଦେଖାଇ କହିଲେ କି ଯଦି ସେ ସନ୍ଥଙ୍କୁ କ୍ରୋଧିତ କରିବାରେ ସଫଳ ହୋଇଯିବେ ସେମାନେ ତାଙ୍କୁ ବହୁତ ବଡ଼ ପୁରସ୍କାର ଦେବେ । ପ୍ରତିଦିନ ସକାଳୁ ଏକନାଥ ନଦୀକୁ ଗାଧୋଇବାକୁ ଯାଆନ୍ତି । ଦିନେ ଯେପରି ସେ ସ୍ନାନ ସାରି ନିଜ କୁଟୀରରେ ପହଞ୍ଚିଲେ, ସେହି ଭଡ଼ାଟିଆ ବ୍ୟକ୍ତି ତାଙ୍କ ମୁହଁ ଉପରକୁ ଛେପ ପକାଇଦେଲା । ସନ୍ଥ ଚୁପ୍‌ଚାପ୍ ଯାଇ ଦ୍ୱିତୀୟ ଥର ଗାଧୋଇ ଆସିଲେ ।

ସେ ଘର ଆଡ଼େ ଯାଉଥିବା ସମୟରେ ପୁଣି ସେହି ବ୍ୟକ୍ତି ତାଙ୍କ ଉପରେ ଛେପ ପକାଇଦେଲା । ଏହି ଦୁଷ୍କର୍ମ ୧୦୭ଥର ପୁନରାବୃତ୍ତି କରାଗଲା । ସନ୍ଥ ନିଜର ଧୈର୍ଯ୍ୟ ହରାଇଲେ ନାହିଁ । ୧୦୮ମ ଥର ସେ ନଦୀକୁ ଗଲେ ଓ ପବିତ୍ର

ନଦୀରେ ସ୍ନାନକଲେ । ଏଥର ସେ ଲୋକର ହୃଦୟ ତରଳି ଗଲା । ଯେପରି ସନ୍ଥ ନିଜ ଘର ଆଡ଼କୁ ଯିବାକୁ ଆରମ୍ଭ କରିଛନ୍ତି, ସେ ବ୍ୟକ୍ତି ତାଙ୍କ ଗୋଡ଼ ତଳେ ପଡ଼ିଗଲା ଓ କ୍ଷମା ମାଗିବାକୁ ଲାଗିଲା । ସେ କହିଲା, 'ହେ ମହାତ୍ମା ! ମୋତେ କ୍ଷମା କରନ୍ତୁ । ମୁଁ ବହୁତ ବଡ଼ ପାପ କରିଛି ।' ସେ କହିଲା ଯେ କେତେକ ଧନୀଲୋକ ସନ୍ଥଙ୍କୁ କ୍ରୋଧିତ କରିବାକୁ ପଇସାର ଲୋଭ ଦେଖାଇଥିଲେ । ଧନର ଲୋଭରେ ହିଁ ସେ ଏପରି ଦୁଷ୍କର୍ମ କରିଛି ।

ସନ୍ଥ ବିସ୍ମୟ ପ୍ରକାଶକରି କହିଲେ, 'ତୁମକୁ କ୍ଷମା କରିଦେବି ? କିନ୍ତୁ କ'ଣ ପାଇଁ ? ଆଜି ମୋର ଗୋଟିଏ ଅଦ୍ୱିତୀୟ ଦିନ । ଆଜି ତୁମରି ଯୋଗୁଁ ମୁଁ ଏହି ପବିତ୍ର ଜଳରେ ୧୦୮ ଥର ସ୍ନାନ କରିପାରିଛି । ମୁଁ ତୁମ ପାଖରେ କୃତଜ୍ଞ । ଯଦି ତୁମେ ପୁରସ୍କାର ବିଷୟରେ ଆଗରୁ କହିଥାନ୍ତ ତେବେ ମୁଁ କ୍ରୋଧିତ ହେବାର ନାଟକ କରିଥାଆନ୍ତି, ଯାହାଫଳରେ ତୁମକୁ ପୁରସ୍କାର ମଧ ମିଳି ଯାଇଥାଆନ୍ତା ।'

ଗୁରୁ ଅମରଦାସଙ୍କ ବିଷୟରେ ଭାବନ୍ତୁ । ସେ ଗୁରୁ ଅଙ୍ଗଦଙ୍କ ପରେ ଗାଦୀ ପାଇଥିଲେ । ଗୁରୁ ଅଙ୍ଗଦଙ୍କ ପୁତ୍ର ଦାତୁ ଏଥିପାଇଁ ବଡ଼ ନିରାଶ ଥିଲେ । ତାଙ୍କର ମତ ଥିଲାକି, ଗୁରୁଙ୍କ

ପରେ ସେହି ଗାଦୀ ଉପରେ ତାଙ୍କର ପ୍ରଥମ ଦାବୀ । ସେ କ୍ରୋଧିତ ହୋଇ ଗୁରୁ ଅମରଦାସଙ୍କ ପାଖରେ ପହଞ୍ଚିଲେ ଓ କହିଲେ, 'କାଲି ପର୍ଯ୍ୟନ୍ତ ତୁ ଆମଘରେ କେବଳ ଜଣେ ଚାକର ଥିଲୁ, ଆଜି ତୁ ଗୁରୁଙ୍କ ଆସନ ଉପରେ କବଜା କରିନେଇଛୁ ।' ଏହା କହି ସେ ବୃଦ୍ଧଗୁରୁଙ୍କୁ ଏକ ଗୋଇଠା ମାରିଲେ ।

ଗୁରୁ ତାଙ୍କୁ ଦୟାଭରା ଦୃଷ୍ଟିରେ ଚାହିଁଲେ ଓ କହିଲେ, 'ମୁଁ ବୁଢ଼ା ହୋଇଗଲିଣି ଓ ମୋର ହାଡ଼ମାନ ଟାଣ ହୋଇଯାଇଛି । ସେଥିପାଇଁ ତୁମର ପାଦକୁ କଷ୍ଟ ହୋଇଥିବ, ମୋତେ କ୍ଷମାକର ।'

ସମୟ ସମୟରେ ପ୍ରତ୍ୟେକ ଦେଶରେ ସନ୍ଥ ଓ ଈଶ୍ୱରଙ୍କ ଭକ୍ତମାନେ ନିଜ ଜୀବନ ଚରିତ୍ରରେ କ୍ଷମାଶୀଳତାର ଅନୁପମ ଉଦାହରଣ ପ୍ରସ୍ତୁତ କରି ଯାଇଛନ୍ତି । ଆର୍ଯ୍ୟ ସମାଜର ସଂସ୍ଥାପକ ସ୍ୱାମୀ ଦୟାନନ୍ଦଙ୍କ କଥା ଦେଖାଯାଉ । ସାହସ ଓ ସତ୍ୟ କହିବାରେ ସେ ପ୍ରସିଦ୍ଧ ଥିଲେ । ସେ କୌଣସି ଭୟ ବା ପକ୍ଷପାତ ବିନା ସତ କଥା କହିଦେଉଥିଲେ । ଏହି ଆଚରଣ ପାଇଁ ବହୁତ ପ୍ରଭାବଶାଳୀ ଲୋକ ତାଙ୍କ ପ୍ରତି ଅସନ୍ତୁଷ୍ଟ ଥିଲେ । ସେହି ଲୋକମାନେ ମିଶି ସ୍ୱାମିଜୀଙ୍କ ରୋଷେୟା, ଜଗନ୍ନାଥଙ୍କୁ ଲାଞ୍ଚଦେଇ ସ୍ୱାମିଜୀଙ୍କ ଖାଦ୍ୟରେ ଧୀରେ ଧୀରେ ବିଷ ମିଶାଇବାକୁ କହିଲା ।

ସ୍ୱାମୀ ଦୟାନନ୍ଦ ଗମ୍ଭୀର ଭାବରେ ବେମାର ହୋଇଗଲେ । ଡ଼ାକ୍ତରମାନେ ଜାଣିଗଲେ ଯେ ତାଙ୍କୁ ବିଷ ଦିଆଯାଇଛି ଓ ତାଙ୍କର ବଞ୍ଚିବାର କୌଣସି ଆଶାନାହିଁ । ଋଷି ଦୟାନନ୍ଦଙ୍କୁ ଯେତେବେଳେ ଏକଥା ଜଣାପଡ଼ିଲା, ସେ ଜଗନ୍ନାଥକୁ ପାଖକୁ ଡ଼ାକିଲେ ଓ ତା'ହାତରେ କିଛି ଟଙ୍କା ଦେଇ କହିଲେ, 'ତୁମେ ଯେତେ ଶୀଘ୍ର ପାର ନେପାଳ ପଳାଇଯାଅ । ଯଦି ମୋର ଶିଷ୍ୟମାନେ ସତ୍ୟ ଜାଣିଯିବେ ତେବେ ତୁମକୁ ମାରି ପକାଇବେ ।'

ପ୍ରତ୍ୟେକ ମହାପୁରୁଷ ନିଜ ଜୀବନରେ କ୍ଷମାଶୀଳତାକୁ ହିଁ ଅଙ୍ଗୀକାର କରିଛନ୍ତି । ସନ୍ଥ ଟେରେସାଙ୍କ ଉଦାହରଣ ନିଆଯାଉ । ସେ ଗୋଟିଏ କନଭେଟରେ ଉତ୍କୃଷ୍ଟ, ପବିତ୍ର ଓ ସେବାମୟ ଜୀବନଯାପନ କରୁଥିଲେ । ତାଙ୍କପ୍ରତି ଅନ୍ୟମାନେ ଇର୍ଷା କରିବାକୁ ଲାଗିଲେ । ସେମାନେ ଟେରେସାଙ୍କ ସଦ୍‌ଗୁଣର ଫାଇଦା ଉଠାଇବାକୁ ଲାଗିଲେ । ଭଲ ଓ କ୍ଷମାଶୀଳ ଲୋକଙ୍କ ସହିତ ଅନେକ ସମୟରେ ଏହାହିଁ ଘଟିଥାଏ । ଲୋକମାନେ ମୋତେ କହନ୍ତି, 'ଆପଣ କ୍ଷମା କରିବାର କଥା କହୁଛନ୍ତି କିନ୍ତୁ ଲୋକେ ଏହାର ଅବୈଧ ସୁବିଧା ନେବେ ।" ଟେରେସା ମଧ୍ୟ ଏହିସବୁକୁ ଧରି ନଥିଲେ । ସେ ଆଉ ଗୋଟିଏ ପାଦ ଆଗକୁ

ଚାଲିଯାଉଥିଲେ । ଯଦି କନ୍‌ଭେଟର ଅନ୍ୟ କୌଣସି ବ୍ୟକ୍ତି ତାଙ୍କ ସରଳତାର ସୁଯୋଗ ନେଉଥିଲେ ସେଥିରେ ସେ ପ୍ରସନ୍ନ ହେଉଥିଲେ । ତାଙ୍କୁ ଅସମ୍ମାନ କରାଯାଉଥିଲା । ତାଙ୍କ ଉପରେ ହସୁଥିଲେ ଓ ତାଙ୍କର ଉପହାସ କରାଯାଉଥିଲା । ତାଙ୍କର ସରଳତାର ଉପହାସ କରାଯାଉଥିଲା । କେତେଲୋକ ତାଙ୍କର ସରଳତାର ଭୁଲ ବ୍ୟାଖ୍ୟାକରି ତାଙ୍କୁ ମୂର୍ଖ ବୋଲି ଭାବୁଥିଲେ । ତଥାପି ସେ ଏସବୁ କଥାକୁ ଧରୁନଥିଲେ । ସେ ନିଜ ବାଟରେ ଚାଲୁଥିଲେ ଯାହାକୁ ସେ 'କ୍ଷୁଦ୍ରରାସ୍ତା' ବୋଲି କହୁଥିଲେ । ସେ ବୁଝିପାରୁଥିଲେ ଯେ ଈଶ୍ୱର ସେତିକିବେଳେ ତାଙ୍କୁ ଗ୍ରହଣ କରିବେ ଯେତେବେଳେ ସେ ସ୍ୱୟଂକୁ ଶୂନ୍ୟ କରିଦେବେ । ସେ ଜାଣିପାରିଥିଲେ ଯେ ସ୍ୱୟଂକୁ ଶୂନ୍ୟ କରିଦେବାହିଁ ହେଉଛି ଈଶ୍ୱରୀୟ ସତ୍ତା ଦ୍ୱାରଦେଶର ଚାବିକାଠି ।

ସେ ନିଜ ବଖରାଟିକୁ ସଫାସୁତୁରା ରଖିବାକୁ ଚାହୁଁଥିଲେ । ସେ ନଥିବା ସମୟରେ କେତେକ ଲୋକ ମାଟି ଧୂଳି ପକାଇ ବଖରାଟିକୁ ମଇଳାକରି ଦେଉଥିଲେ । ସେ ଏହାକୁ ଈଶ୍ୱରଙ୍କ ଇଚ୍ଛା ବୋଲି ସ୍ୱୀକାର କରିନେଲେ ଓ ତାଙ୍କ ପାଟିରୁ ଅଭିଯୋଗର କୌଣସି ଶବ୍ଦ ବାହାରୁ ନ ଥିଲା ।

ତାଙ୍କୁ ଗୋଟିଏ ଛୋଟ ଓ ସୁନ୍ଦର ପାଣିଜଗ୍ ବହୁତ ଭଲ ଲାଗୁଥିଲା । କେହିଜଣେ ସେଇଟିକୁ ଚୋରାଇନେଇ ତା ସ୍ଥାନରେ ଗୋଟିଏ ପୁରୁଣା ଓଜନିଆ ପାତ୍ର ରଖିଦେଲା । ସେ ମନେ ମନେ କହିଲେ, 'ଏ ବି ଭଲ ହେଲା । ଏପରି ବସ୍ତୁପ୍ରତି ମୋହରୁ ମୁଁ ମୁକ୍ତ ହୋଇଯିବି ।"

ଦିନେ ରାତିରେ ତାଙ୍କୁ ତାଙ୍କର ଲ୍ୟାମ୍ପ ମିଳିଲା ନାହିଁ ଓ ସେ କିଛି ପଢ଼ାପଢ଼ି କରିପାରିଲେ ନାହିଁ । ସେ ଅନ୍ଧାରରେ ବସିରହିଲେ ଓ ନିଜ ପାଖରେ କୌଣସି ବସ୍ତୁ ନଥିବାରୁ ଆନନ୍ଦକୁ ଉପଭୋଗ କରିବାକୁ ଲାଗିଲେ ।

ସେ ଯେବେବି କାହାପାଇଁ କିଛି କରୁଥିଲେ ସେତେବେଳେ ସେ ଇଚ୍ଛା କରୁଥିଲେ କେହି ସେ ପ୍ରତି ଧ୍ୟାନ ନ ଦେଉ । ସେ ଆନନ୍ଦରେ ଅନ୍ୟର ଦୋଷକୁ ନିଜ ଉପରକୁ ନେଇ ଯାଉଥିଲେ ଓ ସେ ତାଙ୍କର ବରିଷ୍ଠ ଲୋକଙ୍କୁ କିଏ ପ୍ରକୃତରେ ଦୋଷୀ, ତାହା ଜଣାଇବାକୁ ଚେଷ୍ଟା କରୁନଥିଲେ । ଯେତେବେଳେ ଗୋଟିଏ ଫୁଲଦାନି ପକାଇ ଭାଙ୍ଗିଦେବାର ମିଥ୍ୟା ଅଭିଯୋଗ ତାଙ୍କ ଉପରେ ଲଗାଗଲା, ସେ ଭୂମିକୁ ଚୁମ୍ବନ ଦେଇ କହିଲେ ଯେ ଆଗକୁ ସେ ଅଧିକ ସାବଧାନ ରହିବେ ।

ଜଣେ ନନ୍ ତାଙ୍କ ସହିତ ଖରାପ ବ୍ୟବହାର କରୁଥିଲେ କିନ୍ତୁ ଟେରେସା ତାଙ୍କୁ ସମସ୍ତଙ୍କଠାରୁ ବେଶୀ ସାହାଯ୍ୟ କରୁଥିଲେ । ଟେରେସା ଅତ୍ୟନ୍ତ ଧୈର୍ଯ୍ୟର ସହିତ ତାଙ୍କର ସାମନା କରୁଥିଲେ । ଶେଷରେ ସେହି ଅଶାଳୀନ ନନ ତାଙ୍କର ଭକ୍ତ ତଥା ସହୃଦୟ ସଖୀରେ ପରିବର୍ତ୍ତନ ହୋଇଯାଇଥିଲେ ।

ଦୋଷୀ ନଥାଇ ମଧ୍ୟ ତାଙ୍କୁ ଯେଉଁ ଆଘାତ ଦିଆଯାଉଥିଲା, ସେ ସବୁକୁ ସେ କ୍ଷମା କରିଦେଉଥିଲେ । ତାଙ୍କୁ ଶତ୍ରୁ ଭାବୁଥିବା ଲୋକଙ୍କ ପ୍ରତି ତାଙ୍କର ପ୍ରେମ ଥିଲା । ସେ ସମସ୍ତଙ୍କୁ ଈଶ୍ୱରଙ୍କ ସନ୍ତାନ ବୋଲି ଭାବୁଥିଲେ । ସେ କ୍ଷମା ମାର୍ଗରେ ଚାଲି ଚାଲି ସନ୍ଥ ହୋଇଯାଇଥିଲେ । ଆଜି ସଂସାରରେ ସନ୍ଥଙ୍କ ମଧ୍ୟର ସେ ଗୋଟିଏ ଉଜ୍ଜ୍ୱଳତମ ନକ୍ଷତ୍ର ।

## ପରିଚ୍ଛେଦ - ଛଅ
## ଚାରି ଅବସ୍ଥା

କ୍ଷମାଶୀଳ ହେବାକୁ ଆମକୁ ଚାରୋଟି ଅବସ୍ଥା ଦେଇ ଯିବାକୁ ପଡ଼େ । ପ୍ରଥମ ଅବସ୍ଥା ଆଘାତର । କୌଣସି ବ୍ୟକ୍ତି ମୋତେ ଧୋକା ଦେଇଛି, ମୋ'ପ୍ରତି ଖରାପ ବ୍ୟବହାର କରିଛି, ମୋ' ସହିତ ଅନ୍ୟାୟ କରିଛି ଓ ମୁଁ ସେହି କଥା ସବୁକୁ ଭୁଲିପାରୁ ନାହିଁ । ମୋତେ ଆଘାତ ଲାଗିଛି ଓ ସେହି ଆଘାତ ମୋତେ ଭିତରେ ଭିତରେ ଯନ୍ତ୍ରଣା ଦେଉଛି । ଏଠାରେ ଆମକୁ ମନେ ରଖିବାକୁ ହେବ ଯେ ସେ ଆଘାତ ମୋତେ ନୁହଁ ମୋର ଅହଂକୁ ଲାଗିଛି ।

ଗୋଟିଏ ସ୍ତ୍ରୀଲୋକ ଜଣେ ସାଧୁଙ୍କ ପାଖକୁ ଗଲେ ଓ ତାଙ୍କ ଆଗରେ ସ୍ୱୀକାର କଲେକି ତାଙ୍କ ସମ୍ପ୍ରଦାୟ ଜଣେ ପ୍ରଭାବଶାଳୀ ବ୍ୟକ୍ତି ପ୍ରତି ତାଙ୍କ ମନରେ ଅସନ୍ତୋଷ ଅଛି ।

ସାଧୁଜଣକ ସେ ସ୍ତ୍ରୀଲୋକକୁ କହିଲେ, "ତୁରନ୍ତ ସେ ଲୋକ ପାଖକୁ ଯାଅ । ନିଜକୁ ଠିକ୍ ବୋଲି ପ୍ରମାଣିତ କରନାହିଁ । କୌଣସି ପ୍ରକାର କୈଫୟତ୍ ମଧ ଦିଅ ନାହିଁ । ସେ ବ୍ୟକ୍ତିକୁ କହିଦିଅକି, ତା'ପ୍ରତି ମନରେ ମନ୍ଦଚିନ୍ତା ଅଛି । ବିନୟପୂର୍ବକ ତାଙ୍କଠାରୁ କ୍ଷମା ମାଗିନିଅ ।"

ସ୍ତ୍ରୀ ଲୋକଟି କହିଲା, "ମୁଁ ଏପରି କରିପାରିବି ନାହିଁ, ସେ ମୋତେ ଯେଉଁ ଆଘାତ ପହଞ୍ଚାଇଛି, ତାହା ମୁଁ ଜୀବନସାରା ଭୁଲିପାରିବି ନାହିଁ ।"

ସେହି ସ୍ତ୍ରୀ ଲୋକଟି ପ୍ରଥମ ଅବସ୍ଥାରେ ଥିଲା । ତାହା ହେଉଛି ଆଘାତର ଅବସ୍ଥା । ଯେଉଁମାନେ ଏହି ଅବସ୍ଥାରେ ଥାନ୍ତି, ସ୍ୱାଭାବିକ ରୂପରେ ସେମାନେ ଅନ୍ୟ ପ୍ରତି ଦ୍ୱେଷଭାବ ରଖିଥାଆନ୍ତି । ସେମାନେ ବୁଝିପାରନ୍ତି ନାହିଁ ଯେ ସେ ଯେତେବେଳେ ଦ୍ୱେଷ ହୋଇଯାଏ ଅନ୍ୟ ବ୍ୟକ୍ତି ଅପେକ୍ଷା ଦ୍ୱେଷ କରିବା ବ୍ୟକ୍ତି ଅଧିକ ଦୁଃଖୀ ହୋଇଯାଏ । କ୍ରୋଧ ଓ ଚିନ୍ତା ପରି ଘୃଣା ଓ ଦ୍ୱେଷ ମଧ ଶରୀରର କ୍ଷତି କରିଥାଏ । କାରଣ ଏସବୁ ରକ୍ତରେ ବିଷମିଶାଇ ଦିଅନ୍ତି । ଦ୍ୱେଷ ଏପରି ଏକ ରୋଗ ଯାହା ସେବା ଶୁଶ୍ରୂଷାରେ ଭଲ ହୁଏନାହିଁ ବରଂ ଅଧିକ ବଢ଼ିଯାଇଥାଏ ।

ଆଘାତରୁ ଘୃଣା ଉତ୍ପନ୍ନ ହୋଇଥାଏ ଯାହାକି ଦ୍ୱିତୀୟ ଅବସ୍ଥାକୁ ଜନ୍ମ ଦେଇଥାଏ । ମୋତେ ଯେତିକି ଦୁଃଖ ମିଳିଛି, ତାହା ମୁଁ ଭୁଲି ପାରିବି ନାହିଁ । କେବେ କେବେ ମୋର ସେହିବ୍ୟକ୍ତି ପ୍ରତି ଏତେ ଘୃଣା ହୋଇଥାଏ ଯେ ମୋର ମନ ଚାହେଁ ଯେ ସେ ମଧ୍ୟ ସେତିକି ଦୁଃଖ ଭୋଗୁ, ମୁଁ ଯେତିକି ଦୁଃଖ ଭୋଗୁଛି । ମାଡ଼ାମ ଚ୍ୟାଙ୍ଗକାଇ ସେକ ଜାପାନୀମାନଙ୍କୁ ଘୃଣା କରୁଥିଲେ । ତାଙ୍କର ମା' ଜଣେ ଆସ୍ଥାବାନ୍ ମହିଳା ଥିଲେ, ଯାହାଙ୍କର ପ୍ରାର୍ଥନାରେ ବିଶ୍ୱାସ ଥିଲା । ସେକ ତାଙ୍କୁ କହିଲେ, 'ତୁମେ ଈଶ୍ୱରଙ୍କ ପାଖରେ କାହିଁକି ପ୍ରାର୍ଥନା କରୁନାହଁକି ସେ ଜାପାନକୁ ସମୁଦ୍ରରେ ବୁଡ଼ାଇ ଦିଅନ୍ତୁ ।"

ତାଙ୍କର ମା' କହିଲେ, 'ମୁଁ ଏତେ ଖରାପ ପ୍ରାର୍ଥନା କିପରି କରିପାରିବି ?'

ଜଣେ ଚିତ୍ରକର ଥରେ 'ଘୃଣା'ରେ ଏକ ଚିତ୍ର ଆଙ୍କିଲେ । ସେ ଚିତ୍ରଟି ଜଣେ ଦୁର୍ବଳ ଓ ବୃଦ୍ଧ ବ୍ୟକ୍ତିର ଥିଲା । ତାହାର ଚେହେରା ମୃତ୍ୟୁପରି ନିସ୍ତେଜ ଥିଲା । ସେ ନିଜ ମୁଠାରେ ଜଳୁଥିବା ମଶାଲ ଓ ଭୟାନକ ସାପ ଧରି ରଖିଥିଲା । ସେ ନିଜ ଦାନ୍ତରେ ନିଜକୁ ହିଁ କ୍ଷତବିକ୍ଷତ କରି ଚାଲିଥିଲା ।

ଯେତେବେଳେ କଳାକାରଙ୍କୁ ହେି ଚିତ୍ରର ବ୍ୟାଖ୍ୟା କରିବାକୁ କୁହାଗଲା, ସେ କହିଲେ, "ଘୃଣାକୁ ଗୋଟିଏ ବୃଦ୍ଧ ବ୍ୟକ୍ତିର ରୂପରେ ଦେଖାଇ ଦିଆଯାଇଛି କାରଣ ସେ ଯେତିକି ପ୍ରାଚୀନ ଯେତିକି ମାନବତା । ତାର ରଙ୍ଗ ଶେତା କାରଣ ଘୃଣା କରିବା ବ୍ୟକ୍ତି ନିଜକୁ କଷ୍ଟଦେଇ ଦୁଃଖଭରା ଜୀବନ ବିତାଉଥାଏ । ତାର ମୁଠା ତାର ନିର୍ଦ୍ଦୟତା ଦର୍ଶାଉଛି । ମଶାଲ ଓ ସାପ ଏଥିପାଇଁ ଦେଖାଯାଉଛି କାରଣ ଘୃଣାରୁ କଳହ ଓ ବିବାଦ ସୃଷ୍ଟି ହୋଇଥାଏ । ସେ ବ୍ୟକ୍ତି ନିଜ ହୃଦୟକୁ ଏଇଥିପାଇଁ କ୍ଷତବିକ୍ଷତ କରୁଛି କାରଣ ଘୃଣା ସର୍ବଦା ଆତ୍ମଘାତୀ ହୋଇଥାଏ ।"

ଆଘାତରୁ ଘୃଣାର ସୃଷ୍ଟି । ଏହାପରେ ତୃତୀୟ ଅବସ୍ଥା ଆସେ, ଉପରଉଠିର ଅବସ୍ଥା । ମୋ'ଉପରେ ଈଶ୍ୱରଙ୍କର କୃପା ହୁଏ ଓ ମୁଁ ଦୁଃଖ ଦେଇଥିବା ବ୍ୟକ୍ତିକୁ ଗୋଟିଏ ନୂଆ ଦୃଷ୍ଟିରେ ଦେଖୁଛି । ମୋତେ ତାର ସମସ୍ୟା ବୁଝାପଡୁଛି । ମୋର ମନ ସଫା ହୋଇଯାଏ ଓ ମୁଁ ଘୃଣାରୁ ମୁକ୍ତ ହୋଇଯାଏ ।

ଗୋଟିଏ ଝିଅ ଜଣେ ମହାତ୍ମାଙ୍କ ପାଖକୁ ଯାଇ କହିଲା, 'ଜାଣିପାରୁ ନାହିଁ, କାହିଁକି ମୁଁ ଚୁପ୍‌ଚାପ୍ ବସି ପ୍ରାର୍ଥନା କିମ୍ବା ଧ୍ୟାନ

କରିପାରୁ ନାହିଁ । ମୁଁ ଚଞ୍ଚଳତା ଅନୁଭବ କରୁଛି । ସମୟ ଥିଲା ଯେତେବେଳେ ମୁଁ ବହୁତ ଖୁସି ରହୁଥିଲି ।"

ମହାତ୍ମାଜଣକ ପଚାରିଲେ, 'ଏପରି କାହିଁକି ହେଲା ?' ଝିଅଟି ଉତ୍ତର ଦେଲା - "ଏହା ସେହି ଝିଅପାଇଁ ହୋଇପାରେ, ଯାହାକୁ ମୁଁ ଗୋଟିଏ ସମୟରେ ମୋର ବାନ୍ଧବୀ ଭାବୁଥିଲି କିନ୍ତୁ ସେ ମୋ ସହିତ ଅତ୍ୟନ୍ତ ନୀଚ ଧରଣର ବ୍ୟବହାର କଲା ଓ ମୁଁ ନିଶ୍ଚୟ କରିନେଲି କି ମୁଁ ତାକୁ କେବେବି କ୍ଷମା କରିବି ନାହିଁ । ତା'ସହିତ କେବେ....., ମୋତେ ଏହା କହିବ ........

ଧର୍ମାତ୍ମା କହିଲେ - 'ହୃଦୟ ମଧ୍ୟରେ ଗୋଟିଏ ଖରାପ ପ୍ରତିଜ୍ଞାକୁ ପାଳି ରଖିବା ଅପେକ୍ଷା ...... ଉଚିତ୍ । ତା' ପାଖକୁ ଯାଇ କ୍ଷମା ମାଗିନିଅ । ପରଦିନ ଝିଅଟି ନିଜ ବାନ୍ଧବୀ ପାଖକୁ ଯାଇ ନିଜର ବୈଷମ୍ୟପୂର୍ଣ୍ଣ ମନୋଭାବ ପୋଷଣ କରିଥିବା କଥା ସ୍ୱୀକାର କଲା ଓ ସେଥିପାଇଁ କ୍ଷମା ମାଗିଲା ।

ବାନ୍ଧବୀଙ୍କ ଆଖିରୁ ଲୁହ ବହିବାକୁ ଲାଗିଲା । ସେ କହିଲା - "ମୋତେ ତୁମଠାରୁ କ୍ଷମା ମାଗିବା ଉଚିତ । କାରଣ ମୋ ନିଜର ଭୁଲ ବ୍ୟବହାର ପାଇଁ ମୁଁ ଲଜ୍ଜିତ ।"

ଦୁଇ ବାନ୍ଧବୀଙ୍କର ମିଳନ ହୋଇଗଲା । ଉପରୋକ୍ତ ପରେ ଯେଉଁ ଚତୁର୍ଥ ଅବସ୍ଥା ଆସେ, ତାହା ହେଉଛି ମିଳନର ଅବସ୍ଥା । ଯିଏ ମୋତେ ଦୁଃଖ ଦେଇଛି ତାକୁ ମୁଁ ନିଜର ମିତ୍ର କରିବାକୁ ଉତ୍ସୁକ ଏବଂ ନିଜ ଜୀବନରେ ତାକୁ ସାମିଲ କରିବାକୁ ନିମନ୍ତ୍ରଣ କରୁଛି । ତା'ସହିତ ମୁଁ ମୋର ପ୍ରେମ ବାଣ୍ଟିବି, ଆମେ ଦୁଇଜଣ ଏକ ନୂଆ ସୁସ୍ଥ ସମ୍ବନ୍ଧ ଆଡ଼କୁ ଆଗେଇ ଚାଲିଛୁ ।

ଯେତେବେଳେ ଆବ୍ରାହମ ଲିଙ୍କନ୍ ଯୁବାବସ୍ଥାରେ ଓକିଲାତି ବ୍ୟବସାୟ ପାଇଁ ସଂଘର୍ଷ କରୁଥିଲେ, ସେତେବେଳେ ତାଙ୍କୁ ଗୋଟିଏ ମହତ୍ତ୍ୱପୂର୍ଣ୍ଣ ମୋକଦ୍ଦମାର କାମ ମିଳିଲା । ସେଥିପାଇଁ ତାଙ୍କୁ ବହୁତ ଧନ ମିଳିବାର ମଧ୍ୟ ଥିଲା । ସେ ବିଷୟରେ ଅନ୍ୟ ଓକିଲଙ୍କ ମଧ୍ୟରେ ଜଣେ ଏଡ଼ୱିନ୍ ଷ୍ଟେଣ୍ଟନ୍ ମଧ୍ୟ ଥିଲେ । ସେ ଲିଙ୍କନଙ୍କୁ ନିଜ ବୈଠକରେ ବସିଥିବାର ଦେଖି କହିଲେ, "ଇଏ ଏଠାରେ କ'ଣ କରୁଛନ୍ତି ? ତାଙ୍କୁ ଏଠାରୁ ଯିବାକୁ କୁହ ? ମୁଁ ଏପରି କୁତ୍ସିତ ମାଙ୍କଡ଼ ସହିତ କାମ କରିବାକୁ ଚାହୁଁନାହିଁ ।" ଲିଙ୍କନ୍ ନ ଶୁଣିଲାପରି ହେଲେ । ଏତେ ଅପମାନ ସତ୍ତ୍ୱେ ସେ ସେହି ଓକିଲ ଦଳରେ ମିଶି ତାଙ୍କ ସହିତ କଚେରୀ

ଗଲେ । ମୋକଦ୍ଦମା କାର୍ଯ୍ୟ ଚାଲୁଥିବା ବେଳେ ଲିଙ୍କନ ପୂରାପୂରି ଉପେକ୍ଷିତ ରହିଥିଲେ । ତାଙ୍କୁ ଅନ୍ୟ ଓକିଲମାନଙ୍କ ପାଖରେ ଆସି ବସିବାକୁ ମଧ୍ୟ କୁହାଯାଇ ନଥିଲା ।

ଷ୍ଟେଣ୍ଟନ୍ ବଡ଼ ନିପୁଣତାର ସହିତ ନିଜର ମକ୍କେଲଙ୍କ ପକ୍ଷରୁ ଯୁକ୍ତି ରଖିଲେ । ତାଙ୍କର ଯୁକ୍ତି ଅତ୍ୟନ୍ତ ବଳିଷ୍ଠ ଥିଲା । ତାଙ୍କ ଉପସ୍ଥାପନା ଶୈଳୀ ଦେଖି ଲିଙ୍କନ୍ ଆବାକ୍ ହୋଇଗଲେ । ଷ୍ଟେଣ୍ଟନ୍ ମୋକଦ୍ଦମାଟି ଜିତିଗଲେ । ସେଦିନ ରାତିରେ ଲିଙ୍କନ୍ କହିଲେ, "ତାଙ୍କର ଯୁକ୍ତି ମୋର ଆଖି ଖୋଲିଦେଇଛି । ଏ ପର୍ଯ୍ୟନ୍ତ ମୁଁ କୌଣସି ବ୍ୟକ୍ତିକୁ ନିଜ କେସ୍ ପାଇଁ ଏପରି ବିସ୍ତୃତ ଓ ସୁନ୍ଦର ପ୍ରସ୍ତୁତି କରିବା ଦେଖିନାହିଁ । ତାଙ୍କ ସାମନାରେ ମୁଁ କିଛି ନୁହେଁ । ମୁଁ ଫେରିଯାଇ ପୁଣି ଓକିଲାତି ଶିକ୍ଷା ନୂଆ ଭାବରେ ଗ୍ରହଣ କରିବି ।"

କେତେବର୍ଷ ଏହା ମଧ୍ୟରେ ବିତିଗଲା । ଲିଙ୍କନ୍ ଆମେରିକାର ରାଷ୍ଟ୍ରପତି ହୋଇଗଲେ । ତାଙ୍କର ସବୁଠାରୁ ତୀକ୍ଷ୍ଣ ସମାଲୋଚକଙ୍କ ମଧ୍ୟରେ ଷ୍ଟେଣ୍ଟନ୍ ମଧ୍ୟ ଥିଲେ; ଯିଏକି ତାଙ୍କୁ ଅପମାନିତ ମଧ୍ୟ କରିଥିଲେ । କିନ୍ତୁ ଲିଙ୍କନ୍ କେବେବି ଭୁଲି ନଥିଲେ

ଷ୍ଟେଣ୍ଟନ୍ ଜଣେ ପ୍ରଭାବଶାଳୀ ବ୍ୟକ୍ତି ଥିଲେ । ଯେତେବେଳେ ରକ୍ଷା ସଚିବ ବାଛିବାର ବେଳ ଆସିଲା, ସେତେବେଳେ ସେ ଷ୍ଟେଣ୍ଟନ୍‌ଙ୍କୁ ବାଛିଲେ । କେବଳ ଲିଙ୍କନଙ୍କ ପରି ଉଦାର ଓ କ୍ଷମାଶୀଳ ବ୍ୟକ୍ତି ହିଁ ଷ୍ଟେଣ୍ଟନଙ୍କ ଅପମାନର ଉପରକୁ ଉଠିପାରନ୍ତି ।

ଏପରି ଦିନ ମଧ୍ୟ ଆସିଲା, ଯେତେବେଳେ ଲିଙ୍କନ୍ ଜଣେ ହତ୍ୟାକାରୀର ଗୁଳିଚୋଟରେ ଶେଷ ନିଃଶ୍ୱାସ ନେଉଥିଲେ । ଯେତେବେଳେ ସେ ସବୁଦିନ ପାଇଁ ଆଖି ବୁଜି ଦେଲେ, ସେତେବେଳେ ଷ୍ଟେଣ୍ଟନ୍ ଅତ୍ୟନ୍ତ ଦୁଃଖର ସହିତ ତାଙ୍କୁ ଭାବପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଦେଇ କହିଲେ, "ଏବେ ସେ ଯୁଗପୁରୁଷ ହୋଇଗଲେ ।"

## ପରିଚ୍ଛେଦ - ପାଞ୍ଚ
## ଦଶଟି ବ୍ୟାବହାରିକ ପରାମର୍ଶ

କ୍ଷମାଶୀଳତା ବାଟରେ ଚାଲିବାକୁ କେତେକ ବ୍ୟାବହାରିକ ପରାମର୍ଶ ପ୍ରସ୍ତୁତ କରାଯାଇଛି । ମୁଁ ଏହାକୁ କ୍ଷମାଶୀଳତାର ଦଶଟି ଆଙ୍ଗୁଳି ବୋଲି କହିଥାଏ ।

ପରାମର୍ଶ - ୧ :

ଯେବେବି କେହି ତୁମକୁ ଦୁଃଖ ଦିଏ, ସେହି ସମୟରେ ଈଶ୍ୱରଙ୍କୁ ପ୍ରାର୍ଥନା କର - "ହେ ଈଶ୍ୱର ! ଏହି ଆଘାତକୁ ଭୁଲିବାକୁ ମୋତେ ସାହାଯ୍ୟ କରନ୍ତୁ ନଚେତ୍ ଏହା ଏକ ଅଶୁଖା ଘା' ହୋଇ ରହିଯିବ ।"

## ପରାମର୍ଶ - ୨ :

ଯଦି କେହି ତୁମକୁ ଏତେ ଗଭୀର ଆଘାତ ପହଞ୍ଚାଇଥାଏ ଓ ତୁମେ ତାହା ଭୁଲି ପାରୁନାହିଁ, ସେହି ଆଘାତ ବାରମ୍ବାର ମନକୁ ଆସୁଛି ଓ ତୁମ ମନର ଶାନ୍ତି ନଷ୍ଟ କରୁଛି, ତେବେ ତୁମେ ଜଣେ ଆଧ୍ୟାତ୍ମିକ ଗୁରୁଙ୍କ ପାଖକୁ ଯାଅ ଓ ନିଜ ମନର ବୋଝ ହାଲୁକା କରିନିଅ । କିମ୍ବା ଯେଉଁ ବ୍ୟକ୍ତି ବିରୁଦ୍ଧରେ ତୁମ ମନରେ ବିରକ୍ତିଭାବ ଅଛି, ତାଙ୍କୁ ତୁମେ ଗୋଟିଏ ଚିଠି ଲେଖ । ଚିଠିରେ ନିଜ ମନରେ ଥିବା ସମସ୍ତ କଥା ଲେଖିଦିଅ, ସମସ୍ତ ବିଷ ବାହାର କରିଦିଅ । ଯେତେ କଠୋର ଶବ୍ଦ ତୁମେ ଲେଖିପାରିବ ଲେଖ । ଚିଠି ଲେଖିବା ପରେ ତାକୁ ଚିରିଦିଅ ଓ ଚିରୁଥିବା ସମୟରେ ପ୍ରାର୍ଥନା କରି ଚାଲ ଯେ, ଦୁଃଖ ଦେଲାବାଲାର ଜୀବନ ଉପରେ ଈଶ୍ୱରଙ୍କ ଅନୁକମ୍ପା ରହୁ ।

ଥରେ ଆବ୍ରାହମ ଲିଙ୍କନଙ୍କ ପାଖକୁ ଜଣେ ବ୍ୟକ୍ତି ଆସିଲେ । ସେ ଅଭିଯୋଗ କଲେକି, କେହି ଜଣେ ତାଙ୍କ ପ୍ରତି ଅତ୍ୟନ୍ତ ଦୁର୍ବ୍ୟବହାର କରିଛି ଓ ସେହି ଆଘାତକୁ ସେ ଭୁଲିପାରୁନାହାନ୍ତି । ଲିଙ୍କନ କହିଲେ, 'ତୁମେ ତାଙ୍କୁ ଗୋଟିଏ ଚିଠି କାହିଁକି ଲେଖୁନାହଁ ? ତୁମ ମନରେ ତାଙ୍କ ବିରୁଦ୍ଧରେ ଯାହାବି

ଅଭିଯୋଗ ଅଛି, ତାହା ତାଙ୍କୁ ଲେଖିଦିଅ । ଯେତେ ବି କଠୋର ଶବ୍ଦ ଲେଖିପାରିବ, ଲେଖିଦିଅ ।'

ସେ ବ୍ୟକ୍ତି ଚାଲିଗଲେ । ସବୁଠାରୁ ଗୋଟିଏ କଡ଼ା ଚିଠି ଲେଖିସାରି ସେ ଲିଙ୍କନଙ୍କ ପାଖକୁ ଆସି କହିଲେ, "ଆପଣଙ୍କ ପରାମର୍ଶ ଅନୁସାରେ ମୁଁ ଚିଠି ଲେଖିଦେଲି, ଏବେ ତାକୁ ଡ଼ାକରେ ପଠାଇଦେବି ?' ଲିଙ୍କନ କହିଲେ, 'କଦାପି ନୁହେଁ, ଏବେ ଚିଠିଟକୁ ଚିରି ନିଆଁରେ ପକାଇଦିଅ ଓ ସବୁକିଛି ଭୁଲିଯାଅ ।'

ନିଜ ନିଜର ସମସ୍ତ କଥା କହିଦେଲେ ଭୁଲିବା ସହଜ ହୋଇଯାଏ ।

**ପରାମର୍ଶ - ୩ :**

**ଅନ୍ୟକୁ କ୍ଷମା କରିଦିଅ, ତା' ସହିତ ନିଜକୁ ମଧ୍ୟ କ୍ଷମା କରିଦିଅ ।**

ଆମ ମଧ୍ୟରୁ ଅନେକ ଅପରାଧ - ଭାବର ଭାରୀ ଓଜନ ନିଜ ମନରେ ବୋହିଚାଲିଥାଉ । ଏହା ମନର ଶାନ୍ତିକୁ ନଷ୍ଟ କରିଦିଏ । ସଂସାରରେ କୌଣସି ବ୍ୟକ୍ତି ପୂର୍ଣ୍ଣ ନୁହେଁ । ଆମେ ସମସ୍ତେ ପୂର୍ବରୁ କିଛି ନାଁ କିଛି ଭୁଲ କାମ କରିଛେ । ଆମେ ସେଥିପାଇଁ ଅନୁଶୋଚନା କରିବା ଉଚିତ ଓ ନିଜକୁ ସୁଧାରିବାକୁ

ପଡ଼ିବ । ଆମକୁ ଈଶ୍ୱରଙ୍କ ପାଖରେ ସଦ୍‌ବୁଦ୍ଧି ଓ ଶକ୍ତି ପ୍ରଦାନ ପାଇଁ ପ୍ରାର୍ଥନା କରିବା ଉଚିତ । ଯାହାଦ୍ୱାରା କି ସେହି ସବୁ ଭୁଲ ଆମେ ଆଉ କେବେ ନ କରୁ । ଏହାପରେ ସବୁ ଭୁଲିଯିବା ଉଚିତ ।

ଜଣେ ପତି ମୋତେ କହିଲେ କି, ସେ ଓ ତାଙ୍କର ପତ୍ନୀ ପନ୍ଦର ବର୍ଷରୁ ଅଧିକ ସମୟ ଖୁସିରେ ସାଙ୍ଗହୋଇ ଜୀବନ ଅତିବାହିତ କଲେ । ପୁଣି କ'ଣ ହେଲା, ତାଙ୍କର ପତ୍ନୀ ହଠାତ୍ ଉଦାସୀନ ଓ ଚୁପ୍‌ଚାପ୍ ହୋଇ ରହୁଛନ୍ତି, କେବେ କେବେ ସେ ଯାଇ ଗୋଟିଏ ଏକାନ୍ତ ସ୍ଥାନରେ ବସି ଲୁହ ଗଡ଼ାଉଛନ୍ତି । ଏଥିରେ ଘରର ସାରା ବାତାବରଣ ଖରାପ ହୋଇଯାଇଛି । ପଚାରିଲେ ପତ୍ନୀ କୌଣସି ଉତ୍ତର ଦେଉନାହାଁନ୍ତି । ମୁଁ ତାଙ୍କ ପତ୍ନୀଙ୍କୁ ଏକୁଟିଆ ଦେଖାକଲି ଓ ଦେଖୁ ଦେଖୁ ବୁଝିଗଲି ଯେ ତାଙ୍କ ମନରେ ଏକ ଅପରାଧ ଭାବର ବୋଝ ଅଛି । ମୁଁ ତାଙ୍କୁ ଭାବରେ କ୍ଷମା କରନ୍ତି । ଆମକୁ ତାଙ୍କର କ୍ଷମାକୁ ସ୍ୱୀକାର କରିବା ଉଚିତ ଓ ଅନୁଭବ କରିବା ଦରକାର ଯେ ଆମକୁ କ୍ଷମା କରିଦିଆଯାଇଛି । ଆମେ ନିଜ ନିଜକୁ ମଧ୍ୟ କ୍ଷମା କରିଦେବା ଉଚିତ ।

ଯନ୍‌ଶୀଳ ଶ୍ରୀକୃଷ୍ଣଙ୍କର ଭକ୍ତ ଥିଲେ । ମୁଁ ତାଙ୍କୁ କହିଲି, ତୁମେ ଯେତେବେଳେ ଘରେ ଏକୁଟିଆ ଅଛ, ସେତେବେଳେ ଯାଇ ଶ୍ରୀକୃଷ୍ଣଙ୍କ ପାଦତଳେ ବସିଯାଅ ଓ ଯାହାକିଛି ହୋଇଛି ତାଙ୍କୁ ଖୋଲିକରି କହିଦିଅ - "ହେ ଈଶ୍ୱର ! ଆପଣ ତ ସର୍ବଜ୍ଞ, ଯାହାକିଛି ହୋଇଛି, ତାହା ଆପଣ ଜାଣିଛନ୍ତି ।" ଏତିକି ମାତ୍ର କହିଲେ ଚଳିବ ନାହିଁ । ବିସ୍ତାର ପୂର୍ବକ ସବୁ ଘଟଣା କହିବାକୁ ପଡ଼ିବ ଯାହା ତୁମେ ଭାବୁଛ ଯେ ତୁମର କରିବା ଉଚିତ ନଥିଲା । ଏହାପରେ ତାଙ୍କ ପାଖରେ କ୍ଷମା ପ୍ରାର୍ଥନା କରିବ । ସବୁଠାରୁ ମହତ୍ତ୍ୱପୂର୍ଣ୍ଣ କଥା ହେଲା, ସେ ଘଟଣା ବିଷୟରେ ସବୁକିଛି ଭୁଲିଯିବା ।"

ସେ ପଚାରିଲେ - "ମୁଁ ଯାହାକିଛି କରିଛି, କ'ଣ ଶ୍ରୀକୃଷ୍ଣ ସେ ସବୁକୁ ମାଫ କରିଦେବେ ?"

ମୁଁ କହିଲି - "ଶ୍ରୀକୃଷ୍ଣ ନିଶ୍ଚିତ ଭାବରେ କ୍ଷମାକରି ଦିଅନ୍ତି । ତାଙ୍କର ଶକ୍ତିରେ ସମସ୍ତ ପାପ ଧୋଇ ହୋଇଯାଏ ଓ ଆମେ ମୁକ୍ତ ହୋଇଯାଆନ୍ତି ।

ଶ୍ରୀକୃଷ୍ଣ ଶ୍ରୀମଦ୍‌ଭଗବତ୍‌ଗୀତାରେ କହିଛନ୍ତି - "ମୋ ଶରଣରେ ଆସ ଏବଂ ମୁଁ ତୁମକୁ ପାପ ଓ ଦୁଃଖର ବନ୍ଧନରୁ ମୁକ୍ତ

କରିଦେବି । ଏକଥାରେ କୌଣସି ସନ୍ଦେହ ନାହିଁ ।" ତାଙ୍କୁ ଯେପରି କୁହାଯାଇଥିଲା, ସେ ସେପରି କଲେ । କିଛି ଦିନପରେ ପତିପତ୍ନୀ ମୋତେ ଦେଖାକଲେ । ପତ୍ନୀଙ୍କ ମୁଖମଣ୍ଡଳରେ ଏକ ଉଜ୍ଜ୍ୱଳ ସ୍ମିତହାସ୍ୟ ଦେଖି ମୋତେ ଖୁସି ଲାଗିଲା । ସେ ମୋତେ କହିଲେ, "ସବୁ ଠିକ୍ କୁହାଯାଇଛି, ସବୁ ଠିକ୍ ହୋଇଯାଇଛି ।"

ପରାମର୍ଶ - ୪ :

ନିଜ ମନରେ କାହାପ୍ରତି ଶତ୍ରୁତା ମନୋଭାବ ରଖ ନାହିଁ ।

ଯଦି ମୁଁ କାହାପ୍ରତି ଶତ୍ରୁତା ବିଚାର ରଖିଥାଏ, ମୁଁ ତାର କିଛି କ୍ଷତି କରେ ନ କରେ ନିଶ୍ଚିତ ଭାବରେ ନିଜର କ୍ଷତି କରିଥାଏ । କେତେକଙ୍କୁ ଅନ୍ୟ ପ୍ରତି ଶତ୍ରୁତା ରଖିବାଦ୍ୱାରା ମଧ୍ୟ ଶାରୀରିକ ରୋଗ ହୋଇଥାଏ ।

ଜଣେ ମହିଳାଙ୍କର ଆଣ୍ଠୁରେ ଯନ୍ତ୍ରଣା ହେଉଥିଲା । କୌଣସି ଔଷଧ କାମ କରୁ ନଥିଲା । ତାଙ୍କର ଯନ୍ତ୍ରଣା ବଢ଼ି ବଢ଼ି ଚାଲିଥିଲା । ଜଣେ ଧର୍ମାତ୍ମା ତାଙ୍କୁ ପଚାରିଲେ - 'ତୁମ ମନରେ କାହାପ୍ରତି ଦ୍ୱେଷଭାବ ଅଛିକି ?'

ସଙ୍କୋଚର ସହିତ ସେ କହିଲେ - 'ମୋ' ମନ 'ମୋ' ନିଜ ଭଉଣୀଙ୍କ ପ୍ରତି ଦ୍ୱେଷ ଭାବନାରେ ଜଳୁଛି କାରଣ ସେ ମୋ' ସହିତ ଠିକ୍ ବ୍ୟବହାର କରିନାହିଁ ।' ଧର୍ମାତ୍ମା ତାଙ୍କୁ କହିଲେ, ତୁମର ଯନ୍ତ୍ରଣା ସେତେବେଳେ ଠିକ୍ ହେବ ଯେବେ ତୁମେ ଭଉଣୀଙ୍କୁ କ୍ଷମା କରିଦେବ ଓ ତାଙ୍କ ସହିତ ଉତ୍ତମ ସମ୍ପର୍କ ସ୍ଥାପନ କରିବ ।'

ପ୍ରଥମେ ତ ଏପରି କରିବା ତାଙ୍କୁ ଅସମ୍ଭବ ବୋଲି ଜଣାଗଲା । କିନ୍ତୁ ପରେ ସେ ନିଜ ଭଉଣୀଙ୍କୁ ଦେଖାକଲେ, ତାଙ୍କୁ ଆଲିଙ୍ଗନ କଲେ ଓ କହିଲେ - "ଯାହା ହେବାର ଥିଲା ହୋଇଗଲାଣି, ଚାଲ ପୁଣି ନୂଆ ଭାବରେ ଆରମ୍ଭ କରିବା ।'

ସେ ଆଶ୍ଚର୍ଯ୍ୟ ହେଲେ ଯେ ଅତିଶୀଘ୍ର ତାଙ୍କର ଆଣ୍ଠୁଗଣ୍ଠି ରୋଗ ଭଲ ହୋଇଗଲା ।

ପରାମର୍ଶ - ୫ :

ସବୁଦିନ ରାତିରେ ଶୋଇବା ପୂର୍ବରୁ ତୁମେ ସେହି ସବୁ ଲୋକଙ୍କ ବିଷୟରେ ମନେପକାଅ, ଯେଉଁମାନେ ସେଦିନ ତୁମକୁ ଦୁଃଖ ଦେଇଛନ୍ତି କିମ୍ବା ଧୋକା ଦେଇଛନ୍ତି, ସେମାନଙ୍କ ନାମ ଉଚ୍ଚାରଣ କରି କହ, "ଶ୍ରୀମାନ୍ 'କ' ମୁଁ ତୁମକୁ କ୍ଷମା

କରିଦେଲି : ଈଶ୍ୱର ମୋତେ ସାହାଯ୍ୟ କରନ୍ତୁ ।' ତୁମକୁ ଭଲ ନିଦ ହେବ ଓ ଭଲ ସ୍ୱପ୍ନ ମଧ୍ୟ ଆସିବ ।

ଜଣେ ବାରିଷ୍ଟର ଜଣେ ସନ୍ଥଙ୍କୁ କହିଲେ କି ତାଙ୍କୁ ନିଦ ହେଉନାହିଁ । ଅଧିକାଂଶ ସମୟ ସେ ଉଠି ରହନ୍ତି ଓ ନିଜ ରୁମ୍‌ରେ ଏପଟ ସେପଟ ବୁଲୁଥାଆନ୍ତି ।

ସନ୍ଥ କହିଲେ, 'ଆଜି ରାତିରେ ଶୋଇବା ପୂର୍ବରୁ ତୁମେ ସେ ସମସ୍ତଙ୍କୁ କ୍ଷମା କରିଦିଅ, ଯେଉଁମାନେ ତୁମ ପ୍ରତି ଅନ୍ୟାୟ କରିଛନ୍ତି । ସେମାନଙ୍କ ନାମ ଉଚ୍ଚାରଣ କରି କ୍ଷମା କରିବ ।'

ବାରିଷ୍ଟରଙ୍କୁ ଯେପରି କୁହାଯାଇଥିଲା, ସେ ସେପରି କଲେ । ସେ ପ୍ରତ୍ୟେକ ବ୍ୟକ୍ତିଙ୍କର ନାମ ଉଚ୍ଚାରଣ କରି କହିଲେ, 'ଶ୍ରୀମାନ୍ 'କ' ମୁଁ ତୁମକୁ କ୍ଷମା କରିଦେଉଛି । ଶ୍ରୀମତୀ ମୁଁ ତୁମକୁ କ୍ଷମା କରୁଛି । ହେ ଈଶ୍ୱର ! ଏଥିରେ ମୋତେ ସାହାଯ୍ୟ କରନ୍ତୁ ।' ସେଦିନ ସେ ଗାଢ଼ ନିଦରେ ଶୋଇଯାଇଥିଲେ ।

ପରାମର୍ଶ - ୬ :

କ୍ଷମା କରିବା ଆମର ସ୍ୱଭାବରେ ପରିଣତ ହୋଇଯିବା ଉଚିତ ।

କେବଳ ଥରେ, ଦୁଇଥର କିମ୍ବା ତିନିଥର କାହାକୁ କ୍ଷମା କରିଦେଇ ଆମେ ସନ୍ତୁଷ୍ଟ ହେବା ଉଚିତ ନୁହେଁ । ଯେତେଥର ଜଣେ ଆମକୁ ଦୁଃଖ ଦିଏ, ସେତେଥର ତାକୁ କ୍ଷମା କରିଦେବା ଉଚିତ । ଈଶ୍ୱର ତ ଆମକୁ ବାରମ୍ବାର କ୍ଷମା କରୁଛନ୍ତି । ଆମେ ଯେତେ ଜିଦ୍‌ଖୋର କିମ୍ବା ଅବଜ୍ଞାକାରୀ ହେଲେ ମଧ୍ୟ ସେ ଆମକୁ କ୍ଷମା କରିବାରେ ଥକି ଯାଆନ୍ତି ନାହିଁ । ଶେଷରେ ଆମେ ଯେତେବେଳ ପର୍ଯ୍ୟନ୍ତ ତାଙ୍କ ପାଖକୁ ଫେରି ନଯାଇଛି, ସେ ପର୍ଯ୍ୟନ୍ତ ଧୈର୍ଯ୍ୟ ଧରିଥାଆନ୍ତି ।

ଇଣ୍ଡୋନେସିଆରେ ମୋତେ ଜଣେ ବ୍ୟକ୍ତି ଦେଖାକଲେ । ସେ କହିଲେ କି ତାଙ୍କର ଜଣେ ସହାୟକ ଛଅ ଥର ତାଙ୍କ ବିରୁଦ୍ଧରେ ଟାକ୍ସ ବିଭାଗକୁ ଲେଖିଥିଲେ । "ପ୍ରତ୍ୟେକ ଥର ସେଥିପାଇଁ ସେ ମୋ ପାଖରେ ଭୁଲ ମାଗୁଥିଲେ ଓ ମୁଁ ତାଙ୍କୁ ମୋ ପାଖରେ ପୁଣି ନିଯୁକ୍ତ କରିଦେଉଥିଲି । ଏପରି ବ୍ୟକ୍ତିଙ୍କୁ ମୁଁ କେତେଥର କ୍ଷମା କରିବି ?" ମୁଁ ତାଙ୍କୁ କହିଲି, "ଯୀଶୁଖ୍ରୀଷ୍ଟଙ୍କୁ ମଧ୍ୟ ଏପରି ପ୍ରଶ୍ନ ପଚରାଯାଇଥିଲା । ଆମେ କେତେଥର କ୍ଷମା କରିବୁ ? କ'ଣ ସାତଥର କ୍ଷମା କରିବୁ ?" ଯୀଶୁ କହିଲେ, "ସତୁରି ଥର ସାତ ।" ଯୀଶୁଙ୍କର କଥାର ଅର୍ଥ ଥିଲା ଯେ

ଯେତେଥର ଭୁଲ ସ୍ୱୀକାର କରାଯାଏ ସେତେଥର କ୍ଷମା କରିବା ଉଚିତ ।

**ପରାମର୍ଶ - ୭ :**

**ଆମକୁ ଗୋଟିଏ ପାଦ ଆଗକୁ ଯିବା ଦରକାର ।**

ଆମକୁ କିଏ କ୍ଷମା ମାଗିବା ପୂର୍ବରୁ ଆମେ ତାକୁ କ୍ଷମା କରିଦେବା ଉଚିତ । ଯୀଶୁ କହିଲେ, 'ଯଦି କେହି ତୁମର ଗୋଟିଏ ଗାଲରେ ଚାପୁଡ଼ା ମାରେ ତୁମେ ଅନ୍ୟ ଗାଲ ଦେଖାଇଦିଅ ।' ସେ ମଧ୍ୟ କହିଥିଲେ, "ତୁମକୁ ଯଦି କିଏ ଜବରଦସ୍ତ ତା ସହିତ ଗୋଟିଏ ମାଇଲ ଚାଲିବାକୁ କହେ, ତୁମେ ତା'ସହିତ ଆଉ ଗୋଟିଏ ମାଇଲ ଚାଲ ।" ଏହି ଶିକ୍ଷା ଉପଚାର ଦୃଷ୍ଟିରୁ ମଧ୍ୟ ଅତ୍ୟନ୍ତ ମୂଲ୍ୟବାନ୍ । ଯିଏ ଏହି ଶିକ୍ଷାରେ ଚାଲେ, ତାର ଅନ୍ତରର ଶାନ୍ତି କେବେ ଭଙ୍ଗ ହୁଏନାହିଁ । ଶାନ୍ତି କ'ଣ ସ୍ୱାସ୍ଥ୍ୟର ମୂଳଦୁଆ ନୁହେଁ ?

ଜଣେ ବ୍ୟକ୍ତିର ପଡ଼ୋଶୀ ଅତ୍ୟନ୍ତ ବଦ୍‌ରାଗୀ ଓ କଳିଆଖୋର ଥିଲେ । ପଡ଼ୋଶୀଙ୍କ ଗାଈ ଅନେକ ସମୟରେ ତାଙ୍କ ହରାଭରା ବଗିଚାକୁ ପଶି ଆସୁଥିଲା ।

ଦିନେ ସକାଳେ ସେ ଗାଈକୁ ଅଡ଼ାଇନେଇ ପଡ଼ୋଶୀଙ୍କ ଘରେ ପହଞ୍ଚିଲେ ଓ କହିଲେ "ଭାଇ, ପୁଣି ଥରେ ମୁଁ ତୁମର ଗାଈ ତୁମ ଘରେ ଛାଡ଼ିଯାଇଛି । ପୁଣି ଯଦି ସେ ମୋ ବଗିଚାକୁ ଆସେ..."

ନିଜ ବାକ୍ୟ ପୂରା କରିବା ପୂର୍ବରୁ ପଡ଼ୋଶୀ ରାଗରେ କହିଲେ, "ଯଦି ଆସିଗଲା, ତୁମେ କ'ଣ କରି ପକାଇବ ?"

ସେ ବ୍ୟକ୍ତି ସନ୍ତର୍ପଣରେ କହିଲେ, "ମୁଁ ପୁଣି ତାକୁ ତୁମ ପାଖକୁ ନେଇ ଆସିବି ।"

ଗାଈ ଆଉ କେବେ ତାଙ୍କ ବଗିଚାକୁ ଯାଇନାହିଁ ।

**ପରାମର୍ଶ - ୮ :**

**କ୍ଷମା କରିବା ପରେ ତାକୁ ଭୁଲିଯିବା ମଧ୍ୟ ଉଚିତ ।**

କିଏ କିଏ କହନ୍ତି, "ମୁଁ କ୍ଷମା କରିପାରେ କିନ୍ତୁ ଭୁଲିପାରିବି ନାହିଁ ।" ଏ ତ କ୍ଷମା ନକରିବା ସହିତ ସମାନ ହେଲା । ପ୍ରକୃତ କ୍ଷମା ଏକ କାନ୍‌ସେଲ୍ ହୋଇଥିବା ଚେକ୍ ଭଳି, ଯାହାକୁ ଚିରି ଫୋପାଡ଼ି ଦିଆଯାଏ ଓ ତାହା କେବେ ବି ବ୍ୟବହାରରେ ଲାଗିପାରିବ ନାହିଁ ।

ଥରେ ଦୁଇଜଣ ବନ୍ଧୁଙ୍କର ବହୁତ ଦିନପରେ ସାକ୍ଷାତ ହେଲା । ସେମାନେ ସାଙ୍ଗହୋଇ ଖାଇବେ ବୋଲି ଚିନ୍ତା କଲେ । ସେମାନେ ବସି ଗପସପ କଲେ ଓ ପୁରୁଣା ଦିନର ସ୍ମୃତି ମନେ ପକାଇବାକୁ ଲାଗିଲେ । ଶେଷରେ ଜଣେ ଦେଖିଲେ କି ସକାଳ ତିନିଟା ବାଜିଗଲାଣି । ସେ ଘରକୁ ଫେରିଯିବାକୁ ଭାବିଲେ ।

ପରଦିନ ସେମାନେ ପୁଣି ମିଶିଲେ । ଜଣେ ଅନ୍ୟକୁ ପଚାରିଲେ, "କାଲି ରାତିରେ ଏତେ ଡେରିରେ ଘରେ ପହଞ୍ଚିବାରେ ତୁମ ପତ୍ନୀଙ୍କର କ'ଣ ପ୍ରତିକ୍ରିୟା ଥିଲା ?" ସେ ଜବାବ ଦେଲେ, "ମୁଁ ତାଙ୍କୁ ସବୁ କଥା କହିଲି । ସେ ବୁଝିଗଲେ ଓ ସବୁ ଠିକ୍ ହୋଇଗଲା କିନ୍ତୁ ତୁମର ପତ୍ନୀଙ୍କର ପ୍ରତିକକ୍ରିୟା କ'ଣ ଥିଲା ?"

ପ୍ରଥମ ବନ୍ଧୁ କହିଲେ, "ମୁଁ ଯେତେବେଳେ ଘରେ ପହଞ୍ଚିଲି, ମୋ ପତ୍ନୀ ହିଷ୍ଟୋରିକାଲ (ଐତିହାସିକ) ହୋଇଗଲେ ।"

ଦ୍ୱିତୀୟ ବନ୍ଧୁ କହିଲେ, "ତୁମ କହିବା ଅର୍ଥ ସେ ହିଷ୍ଟେରିକାଲ (ଅତ୍ୟନ୍ତ ଉତ୍ତେଜିତ ହେବା) ହୋଇଗଲେ ।"

ପ୍ରଥମ ବନ୍ଧୁ କହିଲେ, ନାହିଁ ମୋ' କହିବାର ଅର୍ଥ ଐତିହାସିକ ଅଟେ । ଆମ ବୈବାହିକ ଜୀବନର ତିରିଶ ବର୍ଷର ସମସ୍ତ ଘଟଣା ସେ ବଖାଣିବାକୁ ଲାଗିଲେ ।

କରିବାପରେ ଆମେ ତାକୁ ଭୁଲିଯିବା ଉଚିତ ।

ଆମେରିକା ରେଡ୍‌କ୍ରସର ସଂସ୍ଥାପକ କ୍ଲାରା ବର୍ଟନଙ୍କୁ ତାଙ୍କର ଜଣେ ବନ୍ଧୁ ମନେପକାଇ ଦେଲେ ଯେ କିଛି ବର୍ଷ ପୂର୍ବେ କିପରି ତାଙ୍କ ପ୍ରତି ଅତ୍ୟାଚାର କରାଯାଇଥିଲା । କିନ୍ତୁ କ୍ଲାରାଙ୍କର ତାହା ମନେ ପଡୁନଥିଲା । ତାଙ୍କ ବନ୍ଧୁ ପଚାରିଲେ, ମୋର ପୂରା ମନେ ଅଛି ଯେ ମୁଁ ତାକୁ ଭୁଲିଯାଇଛି ।

ଜଣେ ବ୍ୟକ୍ତିଙ୍କର ଜୀବନର ଅନ୍ତିମ ସମୟ ପାଖେଇ ଆସିଥିଲା । ତାଙ୍କର ବନ୍ଧୁ ତାଙ୍କୁ ଧୋକା ଦେଇଥିଲେ । ସେଥିପାଇଁ ତାଙ୍କ ପ୍ରତି ତାଙ୍କର ବୈରଭାବ ଥିଲା । ମରିବା ପୂର୍ବରୁ ସେ ବନ୍ଧୁଙ୍କୁ ଜଣାଇବାକୁ ଚାହୁଁଥିଲେ କି ସେ ତାଙ୍କୁ କ୍ଷମାକରି ଦେଇଛନ୍ତି । ଯେତେବେଳେ ତାଙ୍କ ବନ୍ଧୁ ତାଙ୍କୁ ଦେଖିବାକୁ ଆସିଥିଲେ, ସେ ତାଙ୍କୁ କୁଣ୍ଢାଇଲେ ଓ କହିଲେ, 'ମୁଁ ମରିବାକୁ ଯାଉଛି । ଯାହାକିଛି ହୋଇଯାଇଛି ସେଥିପାଇଁ ତୁମକୁ ମୁଁ କ୍ଷମା କରିଦେଉଛି । ବନ୍ଧୁ ବହୁତ ଆଶ୍ୱସ୍ତ ହେଲେ ଓ ତାଙ୍କ ଆଖି ଲୁହରେ ଛଳଛଳ ହୋଇଗଲା । ସେ ଯିବାପୂର୍ବରୁ ମରିବାକୁ ଯାଉଥିବା ବ୍ୟକ୍ତି କହିଲେ, "ମୁଁ ଯଦି ମରିଯାଏ ତେବେ ତୁମକୁ

କ୍ଷମା କରିଦେବି । କିନ୍ତୁ ମୁଁ ଠିକ୍ ହୋଇଗଲେ ମୋ' ବାକ୍ୟ ଫେରାଇନେବି ।'

**ପରାମର୍ଶ - ୯ :**

**ଯାହାପ୍ରତି ଆପଣଙ୍କ ମନରେ ଦ୍ୱେଷଭାବ ଅଛି, ସେହି ବ୍ୟକ୍ତିଙ୍କ ବିଷୟରେ ସଦ୍‌ଭାବନାପୂର୍ଣ୍ଣ ଆଲୋଚନା କରନ୍ତୁ ।**

ବାସ୍ତବରେ ଆପଣ ସେ ବ୍ୟକ୍ତିର ସେବା ଓ ସହାୟତା କରିବାପାଇଁ ଆଗେଇଯିବା ଉଚିତ । ଏହାକଲେ ଆପଣଙ୍କ ଉପରେ ଈଶ୍ୱରଙ୍କ କୃପା ହେବ ।

ଜର୍ଜ ୱାଶିଂଟନ ଓ ପିଟରମିଲର ସ୍କୁଲ ସାଙ୍ଗ ଥିଲେ । ଜଣେ ଆମେରିକାର ରାଷ୍ଟ୍ରପତି ହୋଇଗଲେ ଓ ଅନ୍ୟଜଣକ ଧର୍ମପ୍ରଚାରକ । ମାଇକେଲ ବିଟ୍‌ମେନ୍ ନାମକ ଜଣେ ବ୍ୟକ୍ତି ମିଲରଙ୍କୁ ବହୁତ ହଇରାଣ କରିଥିଲେ ଓ ଅନେକ ପ୍ରକାର ଦୁଃଖ ଦେଇଥିଲେ । ସଂଯୋଗବଶତଃ ବିଟ୍‌ମେନଙ୍କୁ ଦେଶଦ୍ରୋହର ଗୋଟିଏ ମାମଲାରେ ମୃତ୍ୟୁଦଣ୍ଡର ଆଦେଶ ମିଳିଥିଲା । ମିଲର ସତୁରିମାଇଲ ଚାଲି ଚାଲି ଯାଇ ଫିଲାଡେ଼ଲଫିଆରେ ପହଞ୍ଚି ୱାଶିଂଟନଙ୍କୁ ଦେଖାକଲେ । ୱାଶିଂଟନ୍ ପଚାରିଲେ, ଫିଟରେ ମୁଁ ତୁମପାଇଁ କ'ଣ

କରିପାରିବି ?' ପିଟର କହିଲେ, "ଜର୍ଜ, ମୁଁ ତୁମର ପୁରୁଣା ବନ୍ଧୁ ହିସାବରେ ବିଟମେନର ଜୀବନ ଭିକ୍ଷା କରୁଛି ।"

ୱାଶିଂଟନ୍ କହିଲେ, 'ପିଟର୍, ଆଉ କିଛି ମାଗ । ଏହି କେସ୍‌ଟି ବୃହତ ଗମ୍ଭୀର । ମୁଁ ତୁମର ବନ୍ଧୁଙ୍କର ଜୀବନ ରକ୍ଷା କରିପାରିବି ନାହିଁ ।' ମିଲର କହିଲେ, 'ବନ୍ଧୁ ! ସେ ତ ମୋର ସବୁଠାରୁ ବଡ଼ ଶତ୍ରୁ ।' ତାପରେ ସେ ଗତ କୋଡ଼ିଏ ବର୍ଷ ଧରି ବିଟ୍‌ମେନ୍‌ଦ୍ୱାରା କିପରି ନିର୍ଯ୍ୟାତିତ ହୋଇ ଆସୁଛନ୍ତି ତାହା ବର୍ଣ୍ଣନା କଲେ ।

ଯେତେବେଳେ ୱାଶିଂଟନ୍ ପିଟରଙ୍କ କଷ୍ଟ ଶୁଣିଲେ, ସେ କହିଲେ, ପିଟର ଏଥିରେ ବିଟ୍‌ମେନ ବିରୁଦ୍ଧରେ ଆଉ ଏକ ମାମଲା ଗଢ଼ିଉଠୁଛି । ତୁମେ ନିଜର ବନ୍ଧୁ ନୁହଁ, ଜଣେ ଶତ୍ରୁର ଜୀବନ ରକ୍ଷା କରିବାକୁ ଚାହୁଁଛ । ସତରେ ଏହି କାମ କୌଣସି ମଣିଷର ନୁହେଁ, ବରଂ ଦେବତାର ଅଟେ । ମୁଁ ମଣିଷକୁ ମନା କରିପାରେ କିନ୍ତୁ ଦେବତାଙ୍କୁ ନୁହେଁ । ମୁଁ ତୁମର ବନ୍ଧୁଙ୍କୁ କ୍ଷମା କରି ଦେଉଛି ।

ଜଣେ ଇଂରାଜୀ ଅଫିସର ଯୁଦ୍ଧ କ୍ଷେତ୍ରରେ ନିଜର ଚାକର ସହିତ ଯାଉଥିଲେ । ସେ ଦେଖିଲେ କି, ଶତ୍ରୁପକ୍ଷର ଜଣେ ଆହତ

ସିପାହୀ ପାଣି ପାଇଁ ଚିତ୍କାର କରୁଥିଲା । ଅଫିସର ଜଣକ ଚାକରକୁ କହିଲେ, 'ମୋ ପାଣି ବୋତଲରୁ ତାକୁ ପାଣି ପିଆଇଦିଅ ।' ଚାକରଟି ଯେପରି ପାଣି ଦେବାକୁ ନଇଁପଡ଼ିଛି, ସେହି ସୈନିକଟି ଚାକର ଉପରକୁ ଗୁଳି ଚଳାଇଦେଲା ।

ଚାକରଟି ପଛେଇଗଲା ଓ ପଚାରିଲା - 'ମହାଶୟ ! ମୁଁ ଏବେ କ'ଣ କରିବି ?' ଅଫିସର ଜଣକ ଜାବବ ଦେଲେ, ତଥାପି ତାକୁ ପାଣି ପିଆଇ ଦିଅ ।'

**ପରାମର୍ଶ - ୧୦ :**

ନିଜକୁ ଭୁଲିଯାଆନ୍ତୁ ଓ ଦୁଃଖ ଦେଇଥିବା ବ୍ୟକ୍ତିକୁ ଭଲପାଆନ୍ତୁ ।

ଗୋଟିଏ ଦମ୍ପତି ଥିଲେ, ଏଡ଼ିଥ୍ ଓ କାର୍ଲଟେଲର । ସେମାନଙ୍କ ପ୍ରେମ ସାଧାରଣ ନଥିଲା । ସେମାନେ ଧନୀ ନଥିଲେ କିନ୍ତୁ କାର୍ଲ ଏଡ଼ିଥକୁ ଏତେ ଭଲ ପାଉଥିଲା ଯେ, ଏଡ଼ିଥ୍ ନିଜକୁ ସହରର ସବୁଠାରୁ ଭାଗ୍ୟଶାଳୀ ସ୍ତ୍ରୀ ବୋଲି ଭାବୁଥିଲେ । ସେମାନଙ୍କର ବିବାହର ତେଇଶବର୍ଷ ପୂର୍ଣ୍ଣ ହୋଇଯାଇଥାଏ, ତଥାପି ସେମାନଙ୍କୁ ଲାଗୁଥିଲା କି ଏହି ଅଳ୍ପ ସମୟ ହେବ ସେମାନଙ୍କର ବିବାହ ହୋଇଛି । ଏବେ ମଧ୍ୟ କାର୍ଲର ରୁମ୍‌କୁ ପ୍ରବେଶ

କଲାବେଳେ ଏଡ଼ିଥିର ହୃଦୟର ସ୍ପନ୍ଦନ ବଢ଼ି ଯାଉଥିଲା । କାର୍ଲ ମଧ୍ୟ ନିଜ ପତ୍ନୀଙ୍କୁ ବହୁତ ଭଲ ପାଉଥିଲେ । ଯଦି କୌଣସି କାମରେ ସେ ସହର ବାହାରକୁ ଯାଉଥିଲେ ସେ ଏଡ଼ିଥିଙ୍କ ପାଖକୁ ପ୍ରତି ରାତିରେ ଗୋଟିଏ ପ୍ରେମପତ୍ର ଲେଖୁଥିଲେ । ସେ ଯେଉଁଠାକୁ ଯାଉଥିଲେ, ସେଠାରୁ ଏଡ଼ିଥି ପାଇଁ କିଛି ନା କିଛି ଉପହାର ପଠାଉଥିଲେ ।

୧୯୫୦ ମସିହା ଫେବୃଆରୀ ମାସରେ ସରକାର କାର୍ଲଙ୍କୁ କେତେମାସ ପାଇଁ ଗୋଟିଏ ନୂଆ ମାଲଗୋଦାମ ଖୋଲିବାପାଇଁ ଓକିନାୱା ପଠାଇଦେଲେ । ଏଥରକ ଏଡ଼ିଥଙ୍କୁ କୌଣସି ପତ୍ର କିମ୍ବା କିଛି ଉପହାର ମିଳିଲା ନାହିଁ । ଏତେ ବିଳମ୍ବର କାରଣ ଯେବେବି ଏଡ଼ିଥି କାର୍ଲଙ୍କୁ ପଚାରନ୍ତି, କାର୍ଲ ଜବାବ ଦିଅନ୍ତି ଯେ ଆଉ ମାସେ ଦୁଇମାସେ ସେଠାରେ ରହିବାକୁ ପଡ଼ିବ । ଗୋଟିଏ ବର୍ଷ ବିତିଗଲା । ତଥାପି କାର୍ଲ ଫେରିଲେ ନାହିଁ । ତାଙ୍କର ଚିଠି ଆସିବା ମଧ୍ୟ କମିଗଲା । ପତ୍ରଗୁଡ଼ିକ ମଧ୍ୟ ଭାବହୀନ ଥିଲା ଓ ସେଥିରେ ପ୍ରେମ ନଥିଲା ।

କେତେ ସପ୍ତାହର ମୌନତା ପରେ ଏଡ଼ିଥିଙ୍କୁ କାର୍ଲଙ୍କର ଚିଠି ମିଳିଲା । "ପ୍ରିୟ ଏଡ଼ିଥି, ମୁଁ ଯାହା କହିବାକୁ

ଯାଉଛି ତାହାପାଇଁ କୋମଳତମ ଶବ୍ଦ ମୁଁ ପାଉନାହିଁ । ମୁଁ ତୁମକୁ ଛାଡ଼ପତ୍ର ଦେବାକୁ ମେକ୍ସିକୋଠାରେ ଆବେଦନ କରିଛି । ଆଇକୋ ନାମକ ଜଣେ ଜାପାନୀ ଝିଅକୁ ମୁଁ ଏବେ ପ୍ରେମ କରୁଛି ଓ ମୁଁ ତାଙ୍କୁ ବିବାହ କରିବାକୁ ଚାହୁଁଛି । ସେ ଘରର ସମସ୍ତ କାର୍ଯ୍ୟ କରୁଛି ଓ ମୋର ଭଲ ସେବା କରୁଛି ।'

ଏଡ଼ିଥ୍‌ଙ୍କୁ ସଙ୍ଗେ ସଙ୍ଗେ ଗୋଟିଏ ବଡ଼ ଧକ୍କା ଲାଗିଲା । ପୁଣି ତାଙ୍କୁ ରାଗ ଆସିଲା । ସେ କ'ଣ ଛାଡ଼ପତ୍ର ବିରୁଦ୍ଧରେ ଯିବେ ? ସେ ନିଜ ପତି ଓ ସେହି ସ୍ତ୍ରୀ ଲୋକଟିକୁ ଘୃଣା କଲେ, ଯେଉଁମାନେ କି ତାଙ୍କ ଜୀବନକୁ ନଷ୍ଟ କରିଦେଲେ । କିନ୍ତୁ ଏଡ଼ିଥ୍‌ଙ୍କ ଉପରେ ଈଶ୍ୱରଙ୍କ କୃପା ହେଲା । ଅତିଶୀଘ୍ର ସେ 'ଉପଚାର' ବାଲା ତୃତୀୟ ସ୍ତରରେ ପହଞ୍ଚିଗଲେ । ସେ ନିଜ ପତି ବିଷୟରେ କୌଣସି ନିଷ୍ପତ୍ତି ନେବା ପରିବର୍ତ୍ତେ ତାଙ୍କର ସ୍ଥିତିକୁ ବୁଝିବାକୁ ଚେଷ୍ଟାକଲେ । ସେ ସେଠାରେ ଏକୁଟିଆ ଥିଲେ ଓ ତାଙ୍କ ହୃଦୟ ପ୍ରେମରେ ଭରି ରହିଥିଲା । ଆଇକୋ ଗୋଟିଏ ଗରୀବ ଝିଅ ଥିଲା । ଏପରି ଅବସ୍ଥାରେ ଗୋଟିଏ ପୁରୁଷ ଓ ଜଣେ ସ୍ତ୍ରୀ ପରସ୍ପର ନିକଟତର ହେବା ସ୍ୱାଭାବିକ ଥିଲା ଓ କାର୍ଲ ଏପରି କିଛି ଅକ୍ଷମଣୀୟ ଅପରାଧ କରି ନଥିଲେ । ଗୋଟିଏ ଯୁବତୀ

ଚାକରାଣୀକୁ ପ୍ରତାରଣା କରିବା ଅପେକ୍ଷା ସେ ଛାଡ଼ପତ୍ରର ରାସ୍ତା ବାଛିଛନ୍ତି । ଆଇକୋ ଉଣେଇଶ ବର୍ଷର ଥିଲା ଓ ଏଡ଼ିଥ୍ ଅଠଚାଳିଶ ବର୍ଷର । ଏଡ଼ିଥ୍ କାର୍ଲଙ୍କୁ ଲେଖିଲେ କି ମଝିରେ ମଝିରେ ସେ ତାଙ୍କୁ ଚିଠି ଲେଖିବେ ଓ ଭଲମନ୍ଦ ଜଣାଇବେ । ଥରେ କାର୍ଲ ଲେଖିଲେ ଯେ ଆଇକୋ ମା' ହେବାକୁ ଯାଉଛନ୍ତି । ୧୯୫୧ରେ ତାର ଗୋଟିଏ ଝିଅ ଜନ୍ମହେଲା । ତାର ନାମ ମାରି ବୋଲି ରଖାଗଲା । ୧୯୫୩ରେ ତାର ଦ୍ୱିତୀୟ କନ୍ୟା 'ହେଲେନ' ଜନ୍ମ ନେଲା । ଏଡ଼ିଥ୍ ଦୁଇପିଲାଙ୍କ ପାଇଁ ଉପହାର ପଠାଉଥିଲେ । କାର୍ଲ ଓ ଏଡ଼ିଥ୍ ପରସ୍ପରକୁ ଚିଠି ଲେଖୁଥିଲେ ।

ଏଡ଼ିଥ୍ଙ୍କର ନିଜ ଜୀବନ ପ୍ରତି ସ୍ପୃହା କମିଗଲା । ସେ ଗୋଟିଏ ଅର୍ଥହୀନ ଜୀବନ ବଞ୍ଚୁଥିଲେ ଓ ଗୋଟିଏ କାରଖାନାରେ କାମକରି ନିଜ ଜୀବନ ନିର୍ବାହ କରୁଥିଲେ । ତାଙ୍କର ଆଶା ଥିଲାକି ଦିନେ ନା ଦିନେ କାର୍ଲ ଫେରିଆସିବେ । ଦିନେ ତାଙ୍କୁ ଚିଠି ମିଳିଲା କି, କାର୍ଲଙ୍କୁ ବ୍ରେନ୍ କ୍ୟାନ୍‌ସର ହୋଇଛି ଓ ତାଙ୍କର ବଂଚିବାର ସମ୍ଭାବନା ନାହିଁ । କାର୍ଲଙ୍କ ଚିଠିରେ ଡ଼ର ଭରି ରହିଥିଲା, ତାଙ୍କୁ ନିଜ ପାଇଁ ନୁହଁ କିନ୍ତୁ ଦୁଇ ଶିଶୁ ଓ ଆଇକୋର ଚିନ୍ତା ଥିଲା । ସେମାନଙ୍କର କ'ଣ ହେବ ? ତାଙ୍କର ସମସ୍ତ ପୁଞ୍ଜି

ହସ୍‌ପିଟାଲ ବିଲ ଦେବାରେ ସରିଯାଇଛି । ସେ କାଙ୍ଗାଳ ହୋଇ ମରିବାକୁ ଯାଉଛନ୍ତି ।

ଏଡ଼ିଥ୍‌ଙ୍କୁ କୌଣସି ଏକ ନିଷ୍ପତ୍ତି ନେବାକୁ କଷ୍ଟ ହେଉଥାଏ । ସେ କାର୍ଲଙ୍କୁ ଭଲ ପାଉଥିଲେ । ସେହି ଭଲପାଇବା ପାଇଁ ସେ କ'ଣ ବା ନ କରିପାରିବେ ! ସେ କାର୍ଲଙ୍କୁ ଲେଖିଲେ କି ଯଦି ଆଇକୋ ରାଜି ହୁଅନ୍ତି, ତେବେ ସେ ମାରି ଓ ହେଲେନଙ୍କୁ ପୋଷ୍ୟସନ୍ତାନ ଭାବରେ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛନ୍ତି ।

ଏଡ଼ିଥ୍ ଜାଣିଥିଲେ ଯେ ୫୪ବର୍ଷ ବୟସରେ ଦୁଇ ଦୁଇଟି ଛୋଟ ପିଲାଙ୍କର ମା' ହେବା ସହଜ କାମ ନୁହେଁ । ତଥାପି ସେ ନିଶ୍ଚିତ କରିନେଲେକି, 'କାର୍ଲଙ୍କ ପାଇଁ ମୁଁ ଏହା ମଧ୍ୟ କରିପାରିବି ।'

କାର୍ଲଙ୍କର ମୃତ୍ୟୁ ହୋଇଗଲା । ଏଡ଼ିଥ୍ ମାରି ଓ ହେଲେନ ଦୁହିଁଙ୍କର ଦାୟିତ୍ୱ ନେଲେ । ତାହା ବହୁତ କଠିନ କାମ ଥିଲା । ଦୁଇଟି ପିଲାଙ୍କ ପେଟ ପାଳିବାକୁ ତାଙ୍କୁ ଅଧିକ ପରିଶ୍ରମ କରିବାକୁ ପଡ଼ିଲା । ସେ ମଧ୍ୟ ବେମାରରେ ପଡ଼ିଗଲେ । ତଥାପି ଦିନକର ମଧ୍ୟ ଦରମା ନ କାଟିବାକୁ ସେ ପରିଶ୍ରମ କରି ଚାଲିଲେ । ଦିନେ ସେ ଫ୍ୟାକ୍ଟରୀ ମଧ୍ୟରେ ବେହୋସ ହୋଇ ପଡ଼ିଗଲେ । ନିମୋନିଆ

ହୋଇଯିବାରୁ ସେ ସପ୍ତାହେ ହସପିଟାଲରେ ରହିଲେ । ହସପିଟାଲ ବିଛଣାରେ ପଡ଼ିଥିବା ସମୟରେ ତାଙ୍କର ଆଇକୋ କଥା ମନେ ପଡ଼ିଲା । ନିଜ ପିଲାମାନଙ୍କଠାରୁ ଅଲଗା ହୋଇ ତାଙ୍କୁ କେତେ ଏକୁଟିଆ ଲାଗୁ ନଥିବ । ତାର ପତିର ମୃତ୍ୟୁ ହୋଇଯାଇଛି ଓ ପିଲାମାନେ ଦୂରରେ ଅଛନ୍ତି । ଆଇକୋର ଅବସ୍ଥା କ'ଣ ହୋଇନଥିବ ?

ଏଡ଼ିଥ୍ କ୍ଷମାଶୀଳତାର ପଥରେ ଶେଷରେ ପାଦ ରଖିଥିଲେ । ମା'କୁ ଆସି ନିଜ ପିଲାମାନଙ୍କ ସହିତ ରହିବା ଉଚିତ । କିନ୍ତୁ ଅନ୍ୟଦେଶରେ ଯାଇ ରହିବା ପାଇଁ ଆଇନର ପ୍ରତିବନ୍ଧକ ଥିଲା । ଆଇକୋ ଜାପାନର ନାଗରିକ ଥିଲା ଓ ଦେଶାନ୍ତର ଯିବାପାଇଁ ଅନୁମତି ପାଇଁ ବଡ଼ ଲମ୍ବା ୱେଟିଙ୍ଗ ଲିଷ୍ଟ ଥିଲା ।

ଏଡ଼ିଥ୍ ସମସ୍ତ ବିଷୟ ଗୋଟିଏ ସମ୍ବାଦପତ୍ରର ସମ୍ପାଦକଙ୍କୁ ଲେଖିଲେ, ଯିଏକି ନିଜ ଖବରକାଗଜରେ ସବୁ କଥା ଛପାଇଦେଲେ । ଏହି ଖବର ଉପରେ ଲୋକମାନେ ସରକାରଙ୍କୁ ଲେଖିଲେ । କଂଗ୍ରେସରେ ଗୋଟିଏ ବିଶେଷ ବିଲ୍ ପାସ ହେଲା ଓ ଆଇକୋଙ୍କୁ ୧୯୫୭ ଅଗଷ୍ଟ ମାସରେ ଆମେରିକାକୁ ଆସିବାକୁ ଅନୁମତି ମିଳିଲା ।

ନିୟୁର୍କ ବିମାନ ବନ୍ଦରରେ ଉଡ଼ାଜାହାଜ ପହଞ୍ଚିବା କ୍ଷଣି ଏଡ଼ିଥିଙ୍କ ମନରେ ଗୋଟିଏ ଭୟ ଜାତ ହେଲା । କାର୍ଲଙ୍କୁ ତାଙ୍କଠାରୁ ଅଲଗା କରିଥିବା ସ୍ତ୍ରୀ ଲୋକଟିକୁ ଦେଖି କାଳେ ତାଙ୍କ ମନରେ ଘୃଣା ଜାତ ହୋଇଯିବ । ଉଡ଼ାଜାହାଜରୁ ଓହ୍ଲାଉଥିବା ଯାତ୍ରୀମାନଙ୍କ ମଧ୍ୟରେ ଆଇକୋ ଶେଷରେ ଥିଲା । ସେ ସିଡ଼ିରୁ ତଳକୁ ଓହ୍ଲାଇଲା ନାହିଁ । ରେଲିଙ୍ଗକୁ ଜାବୁଡ଼ିଧରି ସେଠାରେ ଠିଆହୋଇ ରହିଲା । ଏଡ଼ିଥି ଅନୁଭବ କଲେ କି, ଆଇକୋ ଭୟଭୀତ ଥିଲେ । ଏଡ଼ିଥି ସାହସ ଯୋଗାଡ଼କରି ଆଇକୋର ନାମଧରି ଡ଼ାକିଲେ ଓ ସେ ଦ୍ରୁତଗତିରେ ସିଡ଼ିରୁ ଓହ୍ଲେଇ ଆସି ଏଡ଼ିଥିଙ୍କୁ କୁଣ୍ଢାଇ ପକାଇଲେ । ମିଳନର ସେହି ଛୋଟ କ୍ଷଣରେ ଏଡ଼ିଥି ପ୍ରାର୍ଥନାକଲେ, "ହେ ଈଶ୍ୱର ! ଏହାକୁ ଭଲ ପାଇବାକୁ ମୋତେ ସାହାଯ୍ୟକର । ମୋତେ ଜାଣିବାକୁ ପଡ଼ିବ ଯେ, ମୋ କାର୍ଲଙ୍କ ଗୋଟିଏ ଭାଗ ଯେପରି ମୋ' ଘରକୁ ଆସିଛି । ମୁଁ ତାଙ୍କର ଫେରି ଆସିବାକୁ ପ୍ରାର୍ଥନା କରୁଥିଲି । ସେ ତାଙ୍କର ଦୁଇଟି ପିଲା ଓ ଏହି ସୌମ୍ୟ ଝିଅଟି ମଧ୍ୟରେ ଅଛନ୍ତି, ଯାହାଙ୍କୁ ସେ ଖୁବ ଭଲ ପାଉଥିଲେ । ହେ ଈଶ୍ୱର ! ଏ କଥାକୁ ବୁଝିବାକୁ ମୋତେ ସାହାଯ୍ୟ କର ।

ମୁଁ ଗୋଟିଏ ସିଧା ପ୍ରଶ୍ନ ପଚାରି ମୋ'କଥା ସମାପ୍ତ କରୁଛି । ହେ ମୋର ପ୍ରିୟ ଭାଇ ଓ ଭଉଣୀମାନେ, କହିଲ ଦେଖି କ'ଣ ତୁମେ ମଧ୍ୟ ଏଡ଼ିଥ୍ ପରି ଭଲ ପାଇପାରିବ ? ମରିବା ସମୟରେ ଏଡ଼ିଥ୍ ସେହି କଥା କହୁଥିଲେ, ଯାହା ସେ କାଲଙ୍କ ସାଙ୍ଗରେ ଥିଲାବେଳେ କହୁଥିଲେ - "ମୁଁ ସହରର ସବୁଠାରୁ ଭାଗ୍ୟଶାଳୀ ସ୍ତ୍ରୀ ଅଟେ ।"

ଏହା ହିଁ ତ କ୍ଷମାଶୀଳତାର ଯାଦୁ ।

## ଦାଦା ଜେ.ପି. ବାସୱାନୀଙ୍କ ଅନ୍ୟ କେତେକ ଜୀବନ ପରିବର୍ତ୍ତନକାରୀ ପୁସ୍ତକ (ଓଡ଼ିଆ)

୧. ଆତ୍ମିକ ପୋଷଣ (୪ଭାଗ)
(ବର୍ଷର ୩୬୫ ଦିନ ପାଇଁ ୩୬୫ଟି ଜୀବନିକା ଗଳ୍ପ)
୨. କ୍ରୋଧକୁ ଛଳାଅ ନିଜକୁ ନୁହେଁ
୩. ଭଲଲୋକ ଦୁଃଖ ପାଆନ୍ତି କାହିଁକି ?
୪. ହସ ଚିକିତ୍ସା
୫. କ୍ଷମାର ଚମତ୍କାରିତା
୬. ପ୍ରେମର ପଥିକ (ଦାଦାଙ୍କ ସଂକ୍ଷିପ୍ତ ଜୀବନୀ)
୭. ଭୟରୁ ମୁକ୍ତି
୮. ମୃତ୍ୟୁ ଆର ପାରିରେ ଜୀବନ
୯. ପ୍ରାର୍ଥନାର ଶକ୍ତି
୧୦. ତୁ ତୋହର ନିଜ ଗୁରୁ

---

**ଯୋଗାଯୋଗ**
ବ୍ରଜ କୁମାର ଶତପଥୀ
୩୫, ଲକ୍ଷ୍ମୀ ବିହାର
ପୋ.ଅ. ସୈନିକ ସ୍କୁଲ, ଭୁବନେଶ୍ୱର-୭୫୧୦୦୫
ଭ୍ରାମ୍ୟଭାଷ - ୯୪୩୭୬୩୦୫୭୪

